# ଗ୍ରାମସଭାର କ୍ଷମତା

(ଭୁରିଆ କମିଟି ପ୍ରସ୍ତାବ କ୍ରମେ ନୂତନ କେନ୍ଦ୍ରୀୟ
ପଞ୍ଚାୟତ ସଂପ୍ରସାରଣ ଆଇନରେ
ଗ୍ରାମସଭାର ଦାୟିତ୍ୱ ଓ କର୍ତ୍ତବ୍ୟ)

ସଂହତି, ଭୁବନେଶ୍ୱର

# ଗ୍ରାମସଭାର କ୍ଷମତା

(ଭୁରିଆ କମିଟି ପ୍ରସ୍ତାବ କ୍ରମେ ନୂତନ କେନ୍ଦ୍ରୀୟ
ପଞ୍ଚାୟତ ସଂପ୍ରସାରଣ ଆଇନରେ
ଗ୍ରାମସଭାର ଦାୟିତ୍ୱ ଓ କର୍ତ୍ତବ୍ୟ)

ସଂହତି, ଭୁବନେଶ୍ୱର

କମିଟିର ଅଧ୍ୟକ୍ଷ ଥିବାରୁ ଏହି କମିଟି ଭୂରିଆ କମିଟି ନାମରେ ପରିଚିତ ହେଲା । ଏହି କମିଟି ୧୨ । ୧ । ୧୯୯୫ ରେ କେନ୍ଦ୍ର ସରକାରଙ୍କୁ ତାଙ୍କ ରିପୋର୍ଟ ପ୍ରଦାନ କଲେ । ଭୂରିଆ କମିଟି ତାଙ୍କ ପ୍ରସ୍ତାବରେ ମୁଖ୍ୟତଃ " ଲୋକ୍‌ଙ୍କ ହାତକୁ କ୍ଷମତା ହସ୍ତାନ୍ତର " ନିମନ୍ତେ ବଳିଷ୍ଠ ଯୁକ୍ତିର ସହିତ ସୁଚିନ୍ତିତ ପରାମର୍ଶ ଦେଇଥିଲେ ।

କେନ୍ଦ୍ର ସରକାର ପ୍ରଥମେ ଏହି ରିପୋର୍ଟକୁ ମାନିବାକୁ ପ୍ରସ୍ତୁତ ନଥିଲେ । ତେବେ ଭୂରିଆ କମିଟି ରିପୋର୍ଟ ମାନିନେବା ପାଇଁ ସାରାଦେଶରେ ଜନ ଆନ୍ଦୋଳନ ମାଧ୍ୟମରେ କେନ୍ଦ୍ର ସରକାରଙ୍କ ଉପରେ କ୍ରମଶଃ ଚାପ ସୃଷ୍ଟି କରାଗଲା । ଫଳରେ ଭାରତୀୟ ସମ୍ବିଧାନର ଭାଗ ୯ ରେ ଥିବା ପଞ୍ଚାୟତ ଶାସନ ବ୍ୟବସ୍ଥାରେ ଏକ ଗୁରୁତ୍ୱପୂର୍ଣ୍ଣ ସଂଶୋଧନ କରି, ଆଦିବାସୀ ଅଧ୍ୟୁଷିତ ଅଞ୍ଚଳପାଇଁ ପଞ୍ଚାୟତ ଶାସନ ବ୍ୟବସ୍ଥାରେ ନୂତନ ଏବଂ ପରିବର୍ତ୍ତିତ ଆଇନକୁ ରାଷ୍ଟ୍ରପତି ଗତ ୧୯୯୬ ଡିସେମ୍ବର ୨୪ ତାରିଖ ଦିନ ବିଧିବଦ୍ଧ ଭାବେ ମଂଜୁରୀ ପ୍ରଦାନ କରିଛନ୍ତି ।

ଆଦିବାସୀ ଆନ୍ଦୋଳନର ଏହି ବିରାଟ ସଫଳତା କୁ ବର୍ଣ୍ଣନା କରିବାକୁ ଯାଇ ଆଦିବାସୀଙ୍କ ବନ୍ଧୁ ଡକ୍ଟର୍ ବି.ଡି. ଶର୍ମା ତୁଳନା କରି କୁହନ୍ତି "ସୁଦୃଢ ହିମାଳୟ ପର୍ବତ ଯେ ଦିନେ ଦୋହଲି ଉଠିବ, ହଠାତ୍ ଏକଥା ବିଶ୍ୱାସ କରିହେଉନାହିଁ "। ତେବେ ତଫସିଲ ଭୁକ୍ତ ଅଞ୍ଚଳରେ ଏହି ନୂଆ ଆଇନ"ଗ୍ରାମ ଗଣ ରାଜ୍ୟ" ଗଠନ ଦିଗରେ ପ୍ରଥମ ପଦକ୍ଷେପ । ଏହା ପରେ ଗ୍ରାମସଭା ଉପରେ "ଗାଁ ସମାଜ" ବର୍ତ୍ତମାନର ନୂଆ ବ୍ୟବସ୍ଥା ଅନୁଯାୟୀ ନିଜ ସମ୍ବଳର ସୁରକ୍ଷା, ସମାଜରେ ବିବାଦର ସମାଧାନ ଇତ୍ୟାଦିର ଦାୟୀତ୍ୱ ବହନ କରିବ । ତେବେ "ଆମ ଗାଁରେ ଆମେ ସରକାର " ଉଦ୍ୟମର ସଫଳତା ଏହାପରେ ଆଉ ବେଶୀ ଦୂର ରହିବ ନାହିଁ ବୋଲି ବିଶ୍ୱାସ ।

ଏଠାରେ ମୂଳ କେନ୍ଦ୍ରୀୟ ନିୟମର ଓଡିଆ ଅନୁବାଦ ସହିତ ଏହାର ଅର୍ଥକୁ ବ୍ୟାଖ୍ୟା ଆକାରରେ ଦିଆଯାଇଛି । ନିୟମର ବ୍ୟାଖ୍ୟା ପରେ ଓଡ଼ିଶାରେ ଥିବା ଅନୁସୂଚୀତ ଅଞ୍ଚଳର ଏକ ତାଲିକା ମଧ୍ୟ ସମସ୍ତଙ୍କ ଜାଣିବା ପାଇଁ ଦିଆଯାଇଛି ।

# ପଞ୍ଚାୟତ ସଂକ୍ରାନ୍ତ ବ୍ୟବସ୍ଥାବଳୀ

## (ଅନୂସୂଚୀତ ଅଞ୍ଚଳକୁ ସଂପ୍ରସାରଣ) ଆଇନ୍ ୧୯୯୬

## ଆଇନ୍ ଓ ନ୍ୟାୟ ମନ୍ତ୍ରଣାଳୟ (ବୈଧାନିକ ବିଭାଗ)

ନୂଆଦିଲ୍ଲୀ ଡିସେମ୍ବର ୨୪, ୧୯୯୬ ପୌଷ ୩, ୧୯୧୮ (ସାକ) ପାର୍ଲାମେଣ୍ଟ ଦ୍ୱାରା ଗୃହୀତ ଏହି ନିୟମ ରାଷ୍ଟ୍ରପତିଙ୍କ ଅନୁମୋଦନ ଡିସେମ୍ବର ୨୪, ୧୯୯୬ ରେ ପ୍ରକାଶ ପାଇଲା ।

ଉପବ୍ୟାଖ୍ୟା

୧. *ଏହି ନିୟମକୁ ପଞ୍ଚାୟତ ବ୍ୟବସ୍ଥା (ଅନୂସୂଚୀତ ଅଞ୍ଚଳକୁ ସଂପ୍ରସାରଣ ନିୟମ ୧୯୯୬) କୁହାଯାଇପାରେ ।*

ସଂଜ୍ଞା

୨. *ଏହି ନିୟମରେ, ଅନୁସୂଚିତ ଅଞ୍ଚଳର ଅର୍ଥ ସଂବିଧାନର ଧାରା ୨୪୪ ଉପଧାରା (୧) ରେ ବର୍ଣ୍ଣିତ ସଂଜ୍ଞା ସହିତ ସମାନ ଅଟେ ।*

୩. *ସଂବିଧାନରେ ପଞ୍ଚାୟତ ପାଇଁ ଥିବା ନବମ ଅନୁଚ୍ଛେଦର ପ୍ରସ୍ତାବକୁ ଅନୁସୂଚୀତ ଅଞ୍ଚଳ ପାଇଁ ଧାରା ୪ ରେ ଥିବା ବ୍ୟତିକ୍ରମ ଓ ସଂଶୋଧନ ସହିତ ଲାଗୁ କରାଗଲା ।*

# ଗ୍ରାମସଭାର କ୍ଷମତା

(ଭୁରିଆ କମିଟି ପ୍ରସ୍ତାବ କ୍ରମେ ନୂତନ କେନ୍ଦ୍ରୀୟ
ପଞ୍ଚାୟତ ସଂପ୍ରସାରଣ ଆଇନରେ
ଗ୍ରାମସଭାର ଦାୟିତ୍ୱ ଓ କର୍ତ୍ତବ୍ୟ)

ସଂହତି, ଭୁବନେଶ୍ୱର

**ପ୍ରସ୍ତୁତି**

ସଂହତି (ରାଜ୍ୟସ୍ତରରେ ସ୍ୱେଚ୍ଛାସେବୀ ସଂଗଠନ ମାନଙ୍କର ଏକ ସମୂହ)
୭୩୮/୩, ଜୟଦେବ ବିହାର
ଭୁବନେଶ୍ୱର - ୭୫୧ ୦୧୩

**Prepared by**

SANHATI *(An Alliance of Voluntary Agencies in Orissa)*
738/3, Jayadev Vihar
Bhubaneswar - 751 013

**ପ୍ରକାଶକ**

ବିଶ୍ୱାସ
ଖରିଆର ରୋଡ୍
ନୂଆପଡା

**Publisher**

VISWAS
Khariar Road
Nuapada

**ରଚନା**

ଦେବରଂଜନ ଷଡ଼ଙ୍ଗୀ

**Written by**

Debaranjan Sarangi

**ସଂପାଦନା**

ଗୋବିନ୍ଦ ପଣ୍ଡା
ଉପଦେଷ୍ଟା
ନିଖିଳ ଓଡ଼ିଶା ଆଦିବାସୀ ମଞ୍ଚ

**Edited by**

Govinda Panda
Advisor
Nikhil Orissa Adibasi Mancha

**ପ୍ରଥମ ସଂସ୍କରଣ**

୧ ସେପ୍ଟେମ୍ବର ୧୯୯୭

**First Edition**

1st September, 1997

**ମୁଦ୍ରଣ ଓ ଅଙ୍ଗସଜ୍ଜା**

ନିଉ ଲାଇଫ୍ କ୍ରିଏସନ୍ସ
ଭୁବନେଶ୍ୱର

**Designed & Printed by**

NEWLIFE CREATIONS
BHUBANESWAR

# ଉପକ୍ରମ

ସମ୍ବିଧାନର ୭୩ ତମ ସଂଶୋଧନ ଫଳରେ ପଞ୍ଚାୟତିରାଜ ବ୍ୟବସ୍ଥାକୁ ସାମ୍ବିଧାନିକ ମାନ୍ୟତା ମିଳିଗଲା ଏବଂ ଏହା ଫଳରେ ପ୍ରତ୍ୟେକ ରାଜ୍ୟସରକାର ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥା ପ୍ରବର୍ତ୍ତନ କରିବାକୁ ବାଧ ହେଲେ । ଏହି ନୂଆ ବ୍ୟବସ୍ଥାରେ ମହିଳା, ଆଦିବାସୀ, ଦଳିତ ଏବଂ ସାମାଜିକ ଓ ଅର୍ଥନୈତିକ ଦୃଷ୍ଟିରୁ ପଛୁଆ ଜାତିଙ୍କ ନିମନ୍ତେ ସଂରକ୍ଷଣ ବ୍ୟବସ୍ଥା ରଖାଗଲା । ବିଭିନ୍ନ କାର୍ଯ୍ୟକ୍ରମ ନିମନ୍ତେ ପଞ୍ଚାୟତ ମାନଙ୍କୁ କ୍ଷମତା ଦିଆଯିବା ସହିତ ଅବ୍ୟବସ୍ଥା ନିମନ୍ତେ ରାଜ୍ୟସ୍ତରରେ ଅର୍ଥ କମିଶନ୍ ଗଠନ କରିବାକୁ ବ୍ୟବସ୍ଥା କରାଗଲା । ଉକ୍ତ ପଞ୍ଚାୟତ ବ୍ୟବସ୍ଥା ମଧ୍ୟରେ ପ୍ରତ୍ୟେକ ରାଜ୍ୟ କେହି ଆଗରେ ହେଉ ବା କେହି ଆଇନ ପ୍ରଣୟନର ୪ ବର୍ଷ ପରେ, ଯଥା ଓଡ଼ିଶା, ନିଜ ନିଜ ଅଞ୍ଚଳରେ ନିର୍ବାଚନ କଲେ ।

ଲୋକସଭାରେ ସମ୍ବିଧାନର ଉକ୍ତ ୭୩ ଓ ୭୪ ତମ ସଂଶୋଧନ ସମୟରେ, ଆଦିବାସୀ ବହୁଳ ତଫସିଲଭୁକ୍ତ ଅଞ୍ଚଳ (Scheduled Areas) ନିମନ୍ତେ ପୂର୍ବରୁ ରାଜ୍ୟ ବିଧାନସଭା ଏବଂ ରାଜ୍ୟପାଳଙ୍କ ପାଖରେ ଥିବା ସ୍ୱତନ୍ତ୍ର ଆଇନ ପ୍ରଣୟନ କ୍ଷମତାକୁ କାଢ଼ିନିଆଗଲା । ତେବେ, ଏହି ସଂଶୋଧନ ସମୟରେ ଲୋକସଭାରେ ସଦସ୍ୟଗଣ ବିଚାର କଲେ ଯେ ଯେହେତୁ ତଫସିଲ ଭୁକ୍ତ ଅଞ୍ଚଳ ମାନଙ୍କର ଅବସ୍ଥା ଅନ୍ୟାନ୍ୟ ଅଞ୍ଚଳ ମାନଙ୍କ ଅପେକ୍ଷା ଭିନ୍ନ ଧରଣର ଏବଂ ଏଠିକା ସମସ୍ୟା ତଥା ଆବଶ୍ୟକତା ମଧ୍ୟ ଭିନ୍ନଧରଣର, ସେଥିପାଇଁ ତଫସିଲଭୁକ୍ତ ଅଞ୍ଚଳ ମାନଙ୍କ ପାଇଁ ପଞ୍ଚାୟତିରାଜ ଆଇନରେ କି କି ସ୍ୱତନ୍ତ୍ର ବ୍ୟବସ୍ଥା ରହିବ ସେଥିପାଇଁ ଲୋକସଭାରେ କେତେକ ସ୍ୱତନ୍ତ୍ର ଆଇନ ପ୍ରଣୟନ କରାଯିବାର ଆବଶ୍ୟକତା ରହିଛି ।

ଲୋକସଭାରେ ଏହି କ୍ରମରେ ଆଲୋଚନା ପରେ ଶେଷରେ ତଫସିଲଭୁକ୍ତ ଅଞ୍ଚଳ ମାନଙ୍କ ନିମନ୍ତେ କି ପ୍ରକାରର ପଞ୍ଚାୟତ ଆଇନ ଏବଂ ସ୍ୱାୟତ୍ତ ଶାସନ ବ୍ୟବସ୍ଥା ହେବା ଉଚିତ ସେ ସଂପର୍କରେ ପରାମର୍ଶ ଦେବାକୁ ଭାରତ ସରକାର ୧୯୯୪ ରେ ଏକ କମିଟି ଗଠନ କଲେ । ଲୋକସଭା ସଦସ୍ୟ ଶ୍ରୀ ଦିଲିପ ସିଂହ ଭୂରିଆ ଏହି

କମିଟିର ଅଧ୍ୟକ୍ଷ ଥିବାରୁ ଏହି କମିଟି ଭୂରିଆ କମିଟି ନାମରେ ପରିଚିତ ହେଲା । ଏହି କମିଟି ୧୨ । ୧ । ୧୯୯୫ ରେ କେନ୍ଦ୍ର ସରକାରଙ୍କୁ ତାଙ୍କ ରିପୋର୍ଟ ପ୍ରଦାନ କଲେ । ଭୂରିଆ କମିଟି ତାଙ୍କ ପ୍ରସ୍ତାବରେ ମୁଖ୍ୟତଃ " ଲୋକଙ୍କ ହାତକୁ କ୍ଷମତା ହସ୍ତାନ୍ତର " ନିମନ୍ତେ ବଳିଷ୍ଠ ଯୁକ୍ତିର ସହିତ ସୁଚିନ୍ତିତ ପରାମର୍ଶ ଦେଇଥିଲେ ।

କେନ୍ଦ୍ର ସରକାର ପ୍ରଥମେ ଏହି ରିପୋର୍ଟକୁ ମାନିବାକୁ ପ୍ରସ୍ତୁତ ନଥିଲେ । ତେବେ ଭୂରିଆ କମିଟି ରିପୋର୍ଟ ମାନିନେବା ପାଇଁ ସାରାଦେଶରେ ଜନ ଆନ୍ଦୋଳନ ମାଧ୍ୟମରେ କେନ୍ଦ୍ର ସରକାରଙ୍କ ଉପରେ କ୍ରମଶଃ ଚାପ ସୃଷ୍ଟି କରାଗଲା । ଫଳରେ ଭାରତୀୟ ସମ୍ବିଧାନର ଭାଗ ୯ ରେ ଥିବା ପଞ୍ଚାୟତ ଶାସନ ବ୍ୟବସ୍ଥାରେ ଏକ ଗୁରୁତ୍ୱପୂର୍ଣ୍ଣ ସଂଶୋଧନ କରି, ଆଦିବାସୀ ଅଧ୍ୟୁଷିତ ଅଞ୍ଚଳପାଇଁ ପଞ୍ଚାୟତ ଶାସନ ବ୍ୟବସ୍ଥାରେ ନୂତନ ଏବଂ ପରିବର୍ତ୍ତିତ ଆଇନକୁ ରାଷ୍ଟ୍ରପତି ଗତ ୧୯୯୬ ଡିସେମ୍ବର ୨୪ ତାରିଖ ଦିନ ବିଧିବଦ୍ଧ ଭାବେ ମଂଜୁରୀ ପ୍ରଦାନ କରିଛନ୍ତି ।

ଆଦିବାସୀ ଆନ୍ଦୋଳନର ଏହି ବିରାଟ ସଫଳତା କୁ ବର୍ଣ୍ଣନା କରିବାକୁ ଯାଇ ଆଦିବାସୀଙ୍କ ବନ୍ଧୁ ଡକ୍ଟର୍ ବି.ଡି. ଶର୍ମା ତୁଳନା କରି କହନ୍ତି "ସୁଦୃଢ ହିମାଳୟ ପର୍ବତ ଯେ ଦିନେ ଦୋହଲି ଉଠିବ, ହଠାତ୍ ଏକଥା ବିଶ୍ୱାସ କରିହେଉନାହିଁ "। ତେବେ ତଫସିଲ ଭୁକ୍ତ ଅଞ୍ଚଳରେ ଏହି ନୂଆ ଆଇନ"ଗ୍ରାମ ଗଣ ରାଜ୍ୟ" ଗଠନ ଦିଗରେ ପ୍ରଥମ ପଦକ୍ଷେପ । ଏହା ପରେ ଗ୍ରାମସଭା ଉପରେ "ଗାଁ ସମାଜ" ବର୍ତ୍ତମାନର ନୂଆ ବ୍ୟବସ୍ଥା ଅନୁଯାୟୀ ନିଜ ସମ୍ବଳର ସୁରକ୍ଷା, ସମାଜରେ ବିବାଦର ସମାଧାନ ଇତ୍ୟାଦିର ଦାୟୀତ୍ୱ ବହନ କରିବ । ତେବେ "ଆମ ଗାଁରେ ଆମେ ସରକାର " ଉଦ୍ୟମର ସଫଳତା ଏହାପରେ ଆଉ ବେଶୀ ଦୂର ରହିବ ନାହିଁ ବୋଲି ବିଶ୍ୱାସ ।

ଏଠାରେ ମୂଳ କେନ୍ଦ୍ରୀୟ ନିୟମର ଓଡିଆ ଅନୁବାଦ ସହିତ ଏହାର ଅର୍ଥକୁ ବ୍ୟାଖ୍ୟା ଆକାରରେ ଦିଆଯାଇଛି । ନିୟମର ବ୍ୟାଖ୍ୟା ପରେ ଓଡ଼ିଶାରେ ଥିବା ଅନୁସୂଚୀତ ଅଞ୍ଚଳର ଏକ ତାଲିକା ମଧ୍ୟ ସମସ୍ତଙ୍କ ଜାଣିବା ପାଇଁ ଦିଆଯାଇଛି ।

# ପଞ୍ଚାୟତ ସଂକ୍ରାନ୍ତ ବ୍ୟବସ୍ଥାବଳୀ
## (ଅନୂସୂଚୀତ ଅଞ୍ଚଳକୁ ସଂପ୍ରସାରଣ) ଆଇନ୍ ୧୯୯୬
## ଆଇନ୍ ଓ ନ୍ୟାୟ ମନ୍ତ୍ରଣାଳୟ (ବୈଧାନିକ ବିଭାଗ)

ନୂଆଦିଲ୍ଲୀ ଡିସେମ୍ବର ୨୪, ୧୯୯୬ ପୌଷ ୩, ୧୯୧୮ (ସାକ) ପାର୍ଲାମେଣ୍ଟ ଦ୍ୱାରା ଗୃହୀତ ଏହି ନିୟମ ରାଷ୍ଟ୍ରପତିଙ୍କ ଅନୁମୋଦନ ଡିସେମ୍ବର ୨୪, ୧୯୯୬ ରେ ପ୍ରକାଶ ପାଇଲା ।

ଉପବ୍ୟାଖ୍ୟା

*୧. ଏହି ନିୟମକୁ ପଞ୍ଚାୟତ ବ୍ୟବସ୍ଥା (ଅନୂସୂଚୀତ ଅଞ୍ଚଳକୁ ସଂପ୍ରସାରଣ ନିୟମ ୧୯୯୬) କୁହାଯାଇପାରେ ।*

ସଂଜ୍ଞା

*୨. ଏହି ନିୟମରେ, ଅନୂସୂଚିତ ଅଞ୍ଚଳର ଅର୍ଥ ସଂବିଧାନର ଧାରା ୨୪୪ ଉପଧାରା (୧) ରେ ବର୍ଣ୍ଣିତ ସଂଜ୍ଞା ସହିତ ସମାନ ଅଟେ ।*

*୩. ସଂବିଧାନରେ ପଞ୍ଚାୟତ ପାଇଁ ଥିବା ନବମ ଅନୁଚ୍ଛେଦର ପ୍ରସ୍ତାବକୁ ଅନୂସୂଚୀତ ଅଞ୍ଚଳ ପାଇଁ ଧାରା ୪ ରେ ଥିବା ବ୍ୟତିକ୍ରମ ଓ ସଂଶୋଧନ ସହିତ ଲାଗୁ କରାଗଲା ।*

ବ୍ୟାଖ୍ୟା : ସଂବିଧାନର ନବମ ଅନୁଚ୍ଛେଦରେ ପଞ୍ଚାୟତ ସଂପର୍କରେ କେତେକ ନିୟମ କରାଯାଇଛି । ମାତ୍ର ସେଥିରେ ଗ୍ରାମ ସଭାର ଗଠନ ଓ କ୍ଷମତା ଯେଉଁପରି ନିରୂପଣ କରାଯାଇଛି ବା ଗ୍ରାମ ପଞ୍ଚାୟତରେ ସଂରକ୍ଷଣ ବ୍ୟବସ୍ଥା ଯେପରି ରହିଛି ସେହିପରି ନରହି ଧାରା-୪ ରେ ଥିବା ଗ୍ରାମସଭାର ସଂଜ୍ଞା ଓ ପଞ୍ଚାୟତର ତିନି ସ୍ତରରେ ଥିବା କ୍ଷମତା ଓ ସଂରକ୍ଷଣ ବ୍ୟବସ୍ଥା ରହିବ । ନବମ ସୂଚୀ ର ବାକି ଅଂଶ ଯାହା ସଂପର୍କରେ ଧାରା - ୪ ରେ କିଛି ବି କୁହାଯାଇନାହିଁ, ତାହା ସେହିପରି ରହିବ ।

୪. ***ସଂବିଧାନର ନବମ ସୂଚୀରେ କେତେକ ବ୍ୟବସ୍ଥା ସତ୍ତ୍ୱେ ରାଜ୍ୟ ସ୍ତରରେ ନିମ୍ନଲିଖିତ କୌଣସି ବିଷୟ ସହିତ ମେଳ ହେଉନଥିବା ବିଷୟ ଉପରେ ଅଲଗା ନିୟମ ପ୍ରଣୟନ କରାଯାଇ ପାରିବ ନାହିଁ ।***

ବ୍ୟାଖ୍ୟା : ସଂବିଧାନର ନବମ ସୂଚୀ ଅନୁସାରେ, ରାଜ୍ୟ ସରକାର ଅନୁସୂଚୀତ ଅଞ୍ଚଳ ପାଇଁ ସ୍ୱତନ୍ତ୍ର ବିଲ୍ କରିବା ସମୟରେ ଉକ୍ତ ଧାରା-୪ରେ ଥିବା ପ୍ରସ୍ତାବ ପ୍ରତି ଧ୍ୟାନ ଦେବେ । ରାଜ୍ୟ ସରକାର ଧାରା - ୪ ରେ ଉଲ୍ଲେଖ ଥିବା ପ୍ରସ୍ତାବ ଯଥା ଗ୍ରାମସଭାର ଗଠନ, ଏହାର କ୍ଷମତା, ଗ୍ରାମପଞ୍ଚାୟତର ଭୂମିକା ଇତ୍ୟାଦିକୁ ଉପେକ୍ଷା କରି କୌଣସି ପ୍ରସ୍ତାବ ଆଣି ପାରିବେ ନାହିଁ ।

ଧାରା - ୪ ର ପ୍ରସ୍ତାବଗୁଡ଼ିକ ହେଲା :

(କ) ***ରାଜ୍ୟ ସରକାର ପଞ୍ଚାୟତ ପାଇଁ ବ୍ୟବସ୍ଥା କରିବା ସମୟରେ ଗୋଷ୍ଠିର ପରମ୍ପରା, ପ୍ରଥା, ସାମାଜିକ ଓ ଧାର୍ମିକ ଅଭ୍ୟାସ ତଥା ଗୋଷ୍ଠୀ ସମ୍ପର୍କରେ ପାରମ୍ପାରିକ ପରିଚାଳନା ବ୍ୟବସ୍ଥାକୁ ଦୃଷ୍ଟିରେ ରଖିବେ ।***

ବ୍ୟାଖ୍ୟା : ଆଦିବାସୀମାନେ ବହୁ ପୁରାତନ କାଳରୁ ନିଜର ସଂସ୍କୃତି ଓ ନିଜର ପରମ୍ପରା ନେଇ ବଞ୍ଚୁଛନ୍ତି । ଏବେ ସେମାନଙ୍କ ସଂସ୍କୃତିକୁ ଉପେକ୍ଷା କରି କେତେକ ଆଦିବାସୀ ବିରୋଧି ନିୟମମାନ ସରକାର ତାଙ୍କ ଉପରେ ଲଦି ଦେଉଛନ୍ତି । ସେହିହେତୁ ପ୍ରତ୍ୟେକ ଆଦିବାସୀ ବର୍ତ୍ତମାନର ପରିସ୍ଥିତିରେ ନିଜକୁ ବହୁତ ଅସୁରକ୍ଷିତ ମନେ କରୁଛି । ବର୍ତ୍ତମାନ ସେମାନେ ନିଜ ସଂସ୍କୃତି ତଥା ନିଜ ପ୍ରଥା ଅନୁସାରେ ବଞ୍ଚିବା ପାଇଁ ଏବେ ରାଜ୍ୟ ସରକାର ସୁଯୋଗ ଦେବାକୁ ବାଧ୍ୟ ।

ବିଭିନ୍ନ ଆଦିବାସୀ ଗୋଷ୍ଠୀ ମାନଙ୍କରେ ଦେବୀ ପୂଜା ସମୟରେ, ଛୁଆ ଜନ୍ମ ସମୟରେ ବା ସେହିପରି ବରକନ୍ୟା ବିବାହ ସମୟରେ କେତେକ ସ୍ୱତନ୍ତ୍ର ଚଳଣି ବ୍ୟବସ୍ଥା ରହିଛି । ଏହି ସବୁ ପ୍ରଥାକୁ ବନ୍ଦ କରି ସରକାର କୌଣସି ବିଲ୍ ଆଣିପାରିବେ ନାହିଁ ।

ସେହିପରି, ନିଜ ଗାଁ ସମ୍ପତ୍ତି ଯଥା : ଜଙ୍ଗଲ, ପୋଖରୀ, କଟା, ନାଳିଆ, ଡଙ୍ଗର, ବଗଡ, ଅନାବାଦୀଜମି ଇତ୍ୟାଦିର ପାରମ୍ପରିକ ରୀତିରେ ରକ୍ଷଣାବେକ୍ଷଣ ପାଇଁ ବହୁଦିନରୁ ଆଦିବାସୀ ଗୋଷ୍ଠୀ ସଂଗଠିତ ହୋଇ ପଦକ୍ଷେପ ନେଉଛନ୍ତି । ଯଦି କେହି ଗାଁରୁ ଚୋରିକଲା ବା ଜଙ୍ଗଲରୁ ବିନାନୁମତିରେ ଗଛ କାଟିଲା ତେବେ ଗାଁ ସଭା ବସି ଫଇସଲା କରୁଛି । କାହାକୁ କେତେ ଜୋରିମାନା ହେବ ତାହା ମଧ୍ୟ ଠିକ୍ କରୁଛି ।

ବର୍ତ୍ତମାନର ନୂଆ ନିୟମରେ ଏସବୁ ପ୍ରଥାକୁ ସେହିଭଳି ରଖିବା ପାଇଁ ପୂର୍ଣ୍ଣ ସୁଯୋଗ ଦିଆଯିବ । ରାଜ୍ୟ ସରକାର ଆଦିବାସୀଙ୍କ ସ୍ୱାଧିନତାକୁ ଉପେକ୍ଷା କରି ପଞ୍ଚାୟତର ବ୍ୟବସ୍ଥା ତିଆରି କରି ପାରିବେ ନାହିଁ ।

***(ଖ) ଏକ ଗ୍ରାମ ସାଧାରଣତଃ ଏକ ନିର୍ଦ୍ଦିଷ୍ଟ ଆବାସ ବା ବନ୍ଧ ବା ପଡା ବା ଏକରୁ ଅଧିକ ପଡାକୁ ବୁଝାଏ ଯେଉଁମାନେ କି ନିଜର ପରିଚାଳନା ବ୍ୟବସ୍ଥା ନିଜର ପରମ୍ପରା ବା ପ୍ରଥାକୁ ନେଇ କରିଥାନ୍ତି ।***

*ବ୍ୟାଖ୍ୟା :* ବର୍ତ୍ତମାନର ଗ୍ରାମ ପଞ୍ଚାୟତ ଆଇନ୍‌ରେ ଗ୍ରାମସଭା କହିଲେ କେତେକ ଗ୍ରାମର ସମଷ୍ଟିକୁ ବୁଝାଉଛି । ପ୍ରକୃତରେ ଜନସଂଖ୍ୟାକୁ ଦୃଷ୍ଟିରେ ରଖି ଏପରି ଗ୍ରାମସଭାମାନ ତିଆରି ହୋଇଛି । ଏଥିରେ ମୂଳ ଅସୁବିଧା ହେଉଛି ଯେ, ବର୍ତ୍ତମାନର ଗ୍ରାମସଭାରେ ଅନ୍ତର୍ଭୁକ୍ତ ଗ୍ରାମ ବା ପଡା ଗୁଡିକ କେବେ ଓ କୌଣସି ବି ବିଷୟକୁ ନେଇ ଏକାଠି ବସି ନାହାନ୍ତି । ବର୍ତ୍ତମାନର ନିୟମରେ ଗଠିତ ପଲ୍ଲିସଭାରେ ମଧ୍ୟ ଆଦିବାସୀ ଗୋଷ୍ଠୀ ନିଜକୁ କୌଣସି ଦିଗରୁ ସୁରକ୍ଷିତ ମନେକରୁନାହିଁ । ତେଣୁ ଓଡିଶା ଗ୍ରାମପଞ୍ଚାୟତ ଆଇନ୍ ଆଦିବାସୀମାନଙ୍କ ପାଇଁ ଏକ ବୋଝ ହୋଇଯାଇଛି ।

ଏ ଅସୁବିଧାକୁ ଦୂର କରିବା ପାଇଁ ବର୍ତ୍ତମାନର ନୂଆ ନିୟମରେ ରାଜ୍ୟ ସରକାର ମାନଙ୍କୁ ନିର୍ଦ୍ଦେଶ ଦିଆଯାଇଛି ଯେ, ଗ୍ରାମସଭା ସେହି ଗ୍ରାମମାନଙ୍କୁ ବା ଗ୍ରାମ ମଧ୍ୟରେ ଥିବା ସାହି ବା ପଡା ବା ଗୁଡା (କୋରାପୁଟ ଅଞ୍ଚଳରେ) ବା ଏକାଧିକ ପଡା ବା ସାହି କୁ ନେଇ ଗ୍ରାମସଭା ଗଠନ ହେବ ଯେଉଁଠିକି ସେମାନେ ପୂର୍ବରୁ ଗାଁର କୌଣସି ସର୍ବସାଧାରଣ ସମସ୍ୟାର ସମାଧାନ ପାଇଁ ଏକାଠି ବସି ସମାଧାନ କରୁଥିବାର ଉଦାହରଣ ଥିବ । ଏକ ଗାଁ ମଧ୍ୟରେ ଯଦି ଏକରୁ ଅଧିକ ସମ୍ପ୍ରଦାୟ ଅଛନ୍ତି ତେବେ ନିଜନିଜ ସମ୍ପ୍ରଦାୟଗତ ସମସ୍ୟାକୁ ଛାଡିଦେଲେ ଯେପରିକି ନିଜର ପୂଜା, ପର୍ବ ପର୍ବାଣି ବାହାଘର ଇତ୍ୟାଦି ; ଯଦି କୌଣସି ସାମୂହିକ ସମସ୍ୟା ଯେପରି, ଜଙ୍ଗଲ ସୁରକ୍ଷା, ବନ୍ଧ, ବା କଟା ନିର୍ମାଣ ବା ରାସ୍ତା ନିର୍ମାଣ ଇତ୍ୟାଦିରେ ସେମାନେ ଯଦି ଏକାଠି ବସି ନ୍ୟାୟ ନିଷ୍ପତ୍ତି କରିବାର ପରମ୍ପରା ବହୁଦିନରୁ ରହି ଆସିଛି ତେବେ ସେହି ଏକାଧିକ ପଡା ବା ଗୁଡାକୁ ମଧ୍ୟ ଗ୍ରାମସଭାର ଆଖ୍ୟା ଦିଆଯିବ ।

***(ଗ) ପ୍ରତ୍ୟେକ ଗାଁକୁ ଏକ ଗ୍ରାମସଭାର ମାନ୍ୟତା ଦିଆଯିବ ଏବଂ ଗ୍ରାମ ପଞ୍ଚାୟତ ପାଇଁ ତାଲିକାଭୁକ୍ତ ଭୋଟର୍ ମାନେ ଏହାର ସଦସ୍ୟ ହେବେ ।***

*ବ୍ୟାଖ୍ୟା :* ଗ୍ରାମସଭାର ସଦସ୍ୟ କେବଳ ପଞ୍ଚାୟତର ଭୋଟର ତାଲିକାରେ ନାମ ଉଲ୍ଲେଖ ଥିବା ଭୋଟର୍‌ମାନେ ହିଁ ହୋଇପାରିବେ । ଏହାର ଅର୍ଥ ବାହାରର କୌଣସି ବ୍ୟକ୍ତି ଯେକି ସେହି ନିର୍ଦ୍ଦିଷ୍ଟ ଗାଁରେ ରହେ ନାହିଁ ବା ଅଳ୍ପଦିନ ହେଲା ରହିଛି, ସେ ଭଳି କୌଣସି ବ୍ୟକ୍ତି ଗ୍ରାମସଭାର ସଦସ୍ୟ ହୋଇ ପାରିବ ନାହିଁ କି ଗ୍ରାମ ସଭାର ନିଷ୍ପତ୍ତିକୁ ପ୍ରଭାବିତ କରିପାରିବ ନାହିଁ । ଗ୍ରାମସଭାରେ କେବଳ ସେହି ଗ୍ରାମର ବାସିନ୍ଦାହିଁ ଭାଗ ନେଇ ପାରିବେ ଏବଂ ଆବଶ୍ୟକୀୟ ନିଷ୍ପତ୍ତି ନେଇ ପାରିବେ ।

***(ଘ) ପ୍ରତ୍ୟେକ ଗ୍ରାମସଭା ନିଜ ଲୋକମାନଙ୍କର ପ୍ରଥା ଓ ପରମ୍ପରା, ସେମାନଙ୍କ ସାଂସ୍କୃତିକ ପରିଚୟ, ଗୋଷ୍ଠୀ ସମ୍ପଦ ତଥା ପାରମ୍ପାରିକ ଉପାୟରେ କଳହ ସମାଧାନର ବ୍ୟବସ୍ଥା ଇତ୍ୟାଦିର ସୁରକ୍ଷା ଓ ରକ୍ଷଣାବେକ୍ଷଣ କରିବେ ।***

ବ୍ୟାଖ୍ୟା : ଏଠାରେ ଗ୍ରାମସଭାର ଦାୟିତ୍ୱ ସଂପର୍କରେ ସୂଚନା ଦିଆଯାଇଛି । ଗ୍ରାମସଭା ନିଜ ଗୋଷ୍ଠୀର ପରମ୍ପରା ଓ ନିଜ ସମ୍ବଳର ସୁରକ୍ଷା ପାଇଁ ଉଦ୍ୟମ କରିବ । ନିଜ ପରମ୍ପରାରେ ହସ୍ତକ୍ଷେପ ବା ଗୋଷ୍ଠୀ ସମ୍ପତ୍ତିକୁ ଅକ୍ତିଆର କ୍ଷେତ୍ରରେ ଯେ କୌଣସି ଉଦ୍ୟମକୁ ଗ୍ରାମସଭା ବିରୋଧ କରି ପାରିବ ।

ଏପରିକି ଗ୍ରାମସଭା ଗାଁର କଜିଆର ସମାଧାନ ମଧ୍ୟ କରିପାରିବ । କୌଣସି ସରକାରୀ ନିୟମ ଗ୍ରାମସଭାର ନିଷ୍ପତ୍ତିକୁ ଅବମାନନା କରି ପାରିବ ନାହିଁ । ଏପରିକି ଝଗଡା ବା ଗଣ୍ଡଗୋଳରେ ପୋଲିସ୍ ଗ୍ରାମସଭାର ବିନାନୁମତିରେ ପ୍ରବେଶ କରି ପାରିବ ନାହିଁ । ଗ୍ରାମସଭା ଚାହିଁଲେ ସେ ବିଷୟରେ ସମାଧାନ ନିଜେ କରିବ ନହେଲେ ପୋଲିସ୍ ହାତକୁ ଛାଡିଦେବ ।

ଗ୍ରାମସଭାର ଏହି ନୂତନ ଦାୟିତ୍ୱଟି ଅଧିକ ଗୁରୁତ୍ୱପୂର୍ଣ୍ଣ । ଏହାକୁ ସୁଚାରୁରୂପେ ବ୍ୟବହାର କରିପାରିଲେ ଆଜି ପର୍ଯ୍ୟନ୍ତ ଯେଉଁଭଳି ଆଦିବାସୀ ମାନେ ସରକାରୀ କର୍ମଚାରୀମାନଙ୍କ ଦ୍ୱାରା ଅଯଥାରେ ହଇରାଣ ହୋଇ ଆସୁଛନ୍ତି ତାହା ବନ୍ଦ ହେବ ।

## (ଡ) ପ୍ରତ୍ୟେକ ଗ୍ରାମସଭା

**(୧) ସାମାଜିକ ଓ ଅର୍ଥନୈତିକ ବିକାଶ ପାଇଁ ଗ୍ରାମପଞ୍ଚାୟତ କୌଣସି ଯୋଜନା, କାର୍ଯ୍ୟକ୍ରମ ବା ପ୍ରକଳ୍ପ ଗ୍ରାମସ୍ତରରେ କାର୍ଯ୍ୟକାରୀ କରିବା ପୂର୍ବରୁ ସେହି ଯୋଜନା, କାର୍ଯ୍ୟକ୍ରମ ବା ପ୍ରକଳ୍ପକୁ ଅନୁମୋଦନ କରିବ ।**

ବ୍ୟାଖ୍ୟା : ଗ୍ରାମପଞ୍ଚାୟତରେ ଗ୍ରାମପାଇଁ ଯୋଜନା ତ ତିଆରି ହେବ, ମାତ୍ର ଏହା କଦାପି ମନମୁଖୀ ହୋଇ ପାରିବ ନାହିଁ । ଗ୍ରାମପଞ୍ଚାୟତ ଗାଁର ଆବଶ୍ୟକତାକୁ ଆଖିରେ ରଖି ପ୍ରକୃତରେ ଯୋଜନା ବା କାର୍ଯ୍ୟକ୍ରମ ନେଉଛି ନା ନାହିଁ ସମଗ୍ର ଗ୍ରାମସଭା ନିଶ୍ଚୟ ଜାଣିବା ଦରକାର । କେବଳ ଗ୍ରାମସଭା ଜାଣିଲେ ଯଥେଷ୍ଟ ନୁହେଁ ଏହାକୁ ଅନୁମୋଦନ ମଧ୍ୟ କରିବା ଆବଶ୍ୟକ । ଅନାବଶ୍ୟକ ଯୋଜନାକୁ ଗ୍ରାମସଭା ଚାହିଁଲେ ବନ୍ଦ କରି ଦେଇ ପାରେ । ତେଣୁ ଏ କ୍ଷେତ୍ରରେ ଗ୍ରାମସଭାର ଭୂମିକା ବହୁତଟା ଗୁରୁତ୍ୱପୂର୍ଣ୍ଣ ଅଟେ । ଗ୍ରାମସଭାକୁ ଉପେକ୍ଷା କରି ଗ୍ରାମପଞ୍ଚାୟତ କୌଣସି ଯୋଜନା ବା କାର୍ଯ୍ୟକ୍ରମ ନେଇ ପାରିବ ନାହିଁ ।

(୭) ଦାରିଦ୍ର୍ୟ ଦୂରୀକରଣ ପାଇଁ ଯୋଜନା ତଥା ଅନ୍ୟାନ୍ୟ ଯୋଜନା ଓ କାର୍ଯ୍ୟକ୍ରମ ଗୁଡ଼ିକର ହିତାଧିକାରୀଙ୍କୁ ଚିହ୍ନଟ କରିବା ।

ବ୍ୟାଖ୍ୟା : ରାଜ୍ୟସରକାର ତଥା କେନ୍ଦ୍ର ସରକାରଙ୍କର ଯେଉଁସବୁ ଯୋଜନା ଗ୍ରାମ୍ୟସ୍ତରରେ କାର୍ଯ୍ୟକାରୀ ହେଉଛି, ସେହି ସବୁ ଯୋଜନାର ମୂଳଲକ୍ଷ୍ୟ ହେଲା ସମାଜରୁ ଦାରିଦ୍ର୍ୟ ଦୂରକରିବା । ମାତ୍ର ସେହି ସବୁ ଯୋଜନା ପ୍ରକୃତରେ ଗରିବ ଲୋକଙ୍କ ପାଖରେ ଯାହାରକି ଆବଶ୍ୟକତା ରହିଛି ତା ନିକଟରେ ପହଞ୍ଚି ପାରୁନାହିଁ । ଏପରିବି ହେଉଛି, ଯେଉଁଠିକି ସ୍ୱଚ୍ଛଳ ବ୍ୟକ୍ତିମାନେ ନିଜକୁ ଗରିବ ଦେଖାଇ ସେହି ସବୁ ଯୋଜନାର ଫାଇଦା ନେଇ ଯାଉଛନ୍ତି । ବର୍ତ୍ତମାନଠାରୁ ତାହା ବନ୍ଦ ହେବ ।

ଏବେ ପ୍ରକୃତ ହିତାଧିକାରୀ କିଏ ହେବ ଅର୍ଥାତ କୌଣସି ନିର୍ଦ୍ଦିଷ୍ଟ ଯୋଜନାରେ ନିଜ ଗ୍ରାମର କେଉଁବ୍ୟକ୍ତି ଅନ୍ତର୍ଭୁକ୍ତ ହେବ ତାହା ଗ୍ରାମସଭା ହିଁ ଠିକ୍ କରିବ । ଯଦି ଗ୍ରାମପଞ୍ଚାୟତ ବା ସରକାରୀ ଅନୁଷ୍ଠାନ ହିତାଧିକାରୀଙ୍କୁ ଚିହ୍ନଟ କରି ଦେଇଥାନ୍ତି ତେବେ ବି ସେମାନେ ମନମୁଖୀ ଭାବରେ ସେହି ଲୋକଙ୍କୁ ଯୋଜନାରେ ସାମିଲ କରିପାରିବେ ନାହିଁ ଯଦି ଗ୍ରାମସଭା ସେହି ବ୍ୟକ୍ତିଙ୍କୁ ଅନୁମୋଦନ ନ କରିଛି ।

***(ଚ) ପ୍ରତ୍ୟେକ ଗ୍ରାମପଞ୍ଚାୟତ ନିଜର ଯୋଜନା କାର୍ଯ୍ୟକ୍ରମ ଓ ପ୍ରକଳ୍ପ ପାଇଁ ପଞ୍ଚାୟତ ଦ୍ୱାରା ଅର୍ଥବିନିଯୋଗ ସାର୍ଟିଫିକେଟ (ପ୍ରମାଣପତ୍ର) ଗ୍ରାମସଭା ନିକଟରୁ ଆଣିବେ ।***

ବ୍ୟାଖ୍ୟା : ଧାରା ଡ(୧) ଅନୁସାରେ, ଗ୍ରାମପଞ୍ଚାୟତ ଯୋଜନା ବା ପ୍ରକଳ୍ପ କାର୍ଯ୍ୟକାରୀ କରିବା ପୂର୍ବରୁ ଗ୍ରାମସଭାର ଅନୁମୋଦନ ଆବଶ୍ୟକ । ମାତ୍ର ଏହିଠାରେ ଗ୍ରାମସଭାର ଦାୟିତ୍ୱ ସରିଯାଉ ନାହିଁ । ଅନୁମୋଦନ ପରେ ଗ୍ରାମପଞ୍ଚାୟତ ଉକ୍ତ ଯୋଜନାକୁ କାର୍ଯ୍ୟକାରୀ କରିବ ଏବଂ ସେହି ମତେ ଅର୍ଥ ମଧ୍ୟ ଖର୍ଚ୍ଚ କରିବ । ତେବେ ପ୍ରକୃତରେ ଠିକ୍ ଭାବରେ ଅର୍ଥ ଖର୍ଚ୍ଚ ହୋଇଛି ନା ନାହିଁ ସେ କଥା ଗ୍ରାମସଭା ତଦାରଖ କରିବ । ଯଦି ଠିକ୍ ଭାବରେ କାମ ହୋଇଥାଏ ତେବେ ଏକ ଅର୍ଥ ବିନିଯୋଗ ସାର୍ଟିଫିକେଟ ଗ୍ରାମପଞ୍ଚାୟତକୁ

ଦେବ । ଯଦି ଠିକ୍ ଭାବରେ ଖର୍ଚ୍ଚ ନ ହୋଇଥାଏ ତେବେ ଗ୍ରାମସଭାର ଏ ଅଧିକାର ରହିଛି ଯେ ସେ ପ୍ରମାଣପତ୍ର ଦେବ ନାହିଁ ଯାହାଦ୍ୱାରାକି ଗ୍ରାମପଞ୍ଚାୟତ ଅର୍ଥ ଉପରସ୍ତରରୁ ପାଇପାରିବ ନାହିଁ । ଗ୍ରାମସଭାର ତେଣୁ ଜାଣିବାର ଅଧିକାର ରହିଛି ଯେ କେଉଁ ପ୍ରକଳ୍ପ ବାବଦରେ କେତେ ଅର୍ଥ ଆସୁଛି । ସେହିପରି ସେହି ଅର୍ଥ ପ୍ରକୃତରେ ଠିକ୍ ବାଟରେ ଖର୍ଚ୍ଚ ହେଉଛି ନା ନାହିଁ ସେ କଥା ମଧ୍ୟ ତଦାରଖ କରିବାର ଅଧିକାର ରହିଛି ।

*(ଛ) ସଂବିଧାନର ନବମସୂଚୀରେ ଯେଉଁମାନଙ୍କ ପାଇଁ ସଂରକ୍ଷଣର ବ୍ୟବସ୍ଥା ରହିଛି ଅନୁସୂଚୀତ ଅଞ୍ଚଳର ପଞ୍ଚାୟତରେ ସଂପୃକ୍ତ ଗୋଷ୍ଠୀର ଲୋକ ସଂଖ୍ୟା ଅନୁପାତକୁ ନେଇ ସେମାନଙ୍କ ପାଇଁ ସ୍ଥାନ ସଂରକ୍ଷିତ ହେବ ।*

*ଏହି ସର୍ତ୍ତରେ ଯେ, ଅନୁସୂଚୀତ ଉପଜାତିପାଇଁ ସଂରକ୍ଷିତ ଆସନ ସମୁଦାୟ ଆସନ ସଂଖ୍ୟାର ଅଧାରୁ କମ୍ ହେବ ନାହିଁ । ପୁନଶ୍ଚ ଏହି ସର୍ତ୍ତରେ ଯେ, ପ୍ରତ୍ୟେକ ପଞ୍ଚାୟତ ସ୍ତରରେ ସଭାପତି ଆସନ ଅନୁସୂଚୀତ ଉପଜାତିଙ୍କ ପାଇଁ ସଂରକ୍ଷିତ ରହିବ ।*

*ବ୍ୟାଖ୍ୟା* : ନବମ ସୂଚୀରେ ଯେଉଁପରି ଅନୁସୂଚୀତ ଜାତି, ଅନୁସୂଚୀତ ଉପଜାତି, ଅନୁସୂଚୀତ ଜାତି (ମହିଳା), ଅନୁସୂଚୀତ ଉପଜାତି (ମହିଳା), ଅନ୍ୟ ପଛୁଆଜାତି, ଅନ୍ୟ ପଛୁଆଜାତି (ମହିଳା), ସାଧାରଣ ଜାତି (ମହିଳା) ଙ୍କ ପାଇଁ ସଂରକ୍ଷଣ ବ୍ୟବସ୍ଥା ରହିଛି ସେହିପରି ସଂରକ୍ଷଣ ବ୍ୟବସ୍ଥା ରହିବ ।

ଏହି ସଂରକ୍ଷଣ ବ୍ୟବସ୍ଥା ଚିହ୍ନଟ ବେଳେ ଦୁଇଟିକଥାକୁ ଧ୍ୟାନରେ ରଖାଯିବ । ପ୍ରଥମଟି ହେଲା, ପଞ୍ଚାୟତର ସଦସ୍ୟ ବାଛିଲା ବେଳେ ସମୁଦାୟ ସଦସ୍ୟ ସଂଖ୍ୟାର ଅଧାରୁ ଅଧିକ ସ୍ଥାନ ଅନୁସୂଚୀତ ଉପଜାତିଙ୍କ ପାଇଁ ସଂରକ୍ଷିତ ରହିବ ।

ଦ୍ୱିତୀୟଟି ହେଲା, ପଞ୍ଚାୟତ ସ୍ତରରେ ଗ୍ରାମପଞ୍ଚାୟତ, ପଞ୍ଚାୟତ ସମିତି ଓ ଜିଲ୍ଲା ପରିଷଦ ସଭାପତି ଆସନ ନିଶ୍ଚିତରୂପେ ଅନୁସୂଚୀତ ଉପଜାତି (ସେ ମହିଳା ହୁଅନ୍ତୁ ବା ପୁରୁଷ) ଙ୍କ ପାଇଁ ସଂରକ୍ଷିତ ରହିବ । ଅନ୍ୟ କୌଣସି ଜାତିର

ପୁରୁଷ ବା ମହିଳା ଏହାର ସଭାପତି ହୋଇପାରିବେ ନାହିଁ । କେବଳ ଉପଜାତିର ମହିଳା ବା ପୁରୁଷ ଏହି ସଭାପତି ପଦ ପାଇଁ ପ୍ରତିଯୋଗିତା କରିପାରିବେ ।

(ଜ) ***ପଞ୍ଚାୟତ ସମିତି ସ୍ତରରେ ବା ଜିଲ୍ଲା ସ୍ତରରେ କୌଣସି ପ୍ରତିନିଧି ନଥିବା ଅନୁସୂଚୀତ ଉପଜାତିର ପ୍ରାର୍ଥୀଙ୍କୁ ରାଜ୍ୟସରକାର ଏଥିପାଇଁ ମନୋନୀତ କରିପାରନ୍ତି ।***

***ଏହି ମନୋନୟନ ପଞ୍ଚାୟତରେ ନିର୍ବାଚିତ ହୋଇଥିବା ସମସ୍ତ ପ୍ରତିନିଧିଙ୍କର ଏକ ଦଶମାଂଶରୁ ଅଧିକ ହେବ ନାହିଁ ।***

*ବ୍ୟାଖ୍ୟା :* ଏହି ନିୟମଟିକୁ ବୁଝିବା ପାଇଁ ଏକ ଜିଲ୍ଲାର ଉଦାହରଣ ନିଆଯାଉ । ଆମେ ଜାଣୁ ଫୁଲବାଣୀର ତୁମୁଡ଼ିବନ୍ଧ ବ୍ଲକ୍‌ରେ ପ୍ରାୟ  କନ୍ଧ ସମ୍ପ୍ରଦାୟର ଲୋକ ଅଛନ୍ତି । ନତବେ କୁଟିଆ କନ୍ଧ ଜାତିର ଲୋକ ମଧ୍ୟ ଅଛନ୍ତି । ଏହି ବ୍ଲକରେ ଥିବା କନ୍ଧ ଓ  କୁଟିଆ କନ୍ଧ ଜାତିର ଲୋକଙ୍କୁ ବ୍ଲକ ଅର୍ଥାତ ପଞ୍ଚାୟତ ସମିତି ସ୍ତରରେ ଉପଯୁକ୍ତ ପ୍ରତିନିଧିତ୍ୱ ମିଳିବ । ଯଦି ପ୍ରତିନିଧି ନିର୍ବାଚନରେ କେବଳ କନ୍ଧ ସମ୍ପ୍ରଦାୟର ଲୋକ ନିର୍ବାଚିତ ହୋଇଗଲେ ତେବେ କୁଟିଆ କନ୍ଧଙ୍କ ମନୋନୟନ ସରକାର କରିବେ ଏହି ସର୍ତ୍ତରେ ଯେ ଏହି ମନୋନୟନ ସମୁଦାୟ ଆସନର ଏକ ଦଶମାଂଶରୁ ଅଧିକ ହେବନାହିଁ । ଯଦି ତୁମୁଡିବନ୍ଧ ପଞ୍ଚାୟତ ସମିତିରେ ସମୁଦାୟ ୨୦ ଟି ଆସନ ରହିଛି ଏବଂ ଅନୁସୂଚୀତ ଉପଜାତିଙ୍କ ପାଇଁ ସଂରକ୍ଷିତ ଥିବା ସମୁଦାୟ ଆସନରେ କେବଳ କନ୍ଧ ଜାତିର ଲୋକ (ପୁରୁଷ ହେଉ ବା ସ୍ତ୍ରୀ) ନିର୍ବାଚିତ ହୋଇଗଲେ ତେବେ ସର୍ବାଧିକ ଦୁଇଟି ଆସନରେ ସରକାର, କୁଟିଆ କନ୍ଧଙ୍କ ଭିତରୁ ଦୁଇଜଣଙ୍କୁ ମନୋନୀତ କରିବେ ।

(ଝ) ***କୌଣସି ବିକାଶ ମୂଳକ କାର୍ଯ୍ୟ ପାଇଁ ଅନୁସୂଚୀତ ଅଞ୍ଚଳରେ ଜମି ଦଖଲ କରିବାକୁ ହେଲେ ଏବଂ ଉକ୍ତ କାର୍ଯ୍ୟ ପାଇଁ କ୍ଷତିଗ୍ରସ୍ତ ଲୋକଙ୍କୁ ଥଇଥାନ କରିବା ପାଇଁ ଅନୁସୂଚୀତ ଅଞ୍ଚଳରେ ଜମି ଦଖଲ କରିବାକୁ ଥିଲେ, ତା ପୂର୍ବରୁ ଉପଯୁକ୍ତ ସ୍ତରରେ ଗ୍ରାମସଭା ବା ପଞ୍ଚାୟତ ସହିତ***

*ପରାମର୍ଶ କରିବା ଜରୁରୀ । ଅନୁସୂଚୀତ ଅଞ୍ଚଳରେ ପ୍ରକଳ୍ପ ଗୁଡ଼ିକର ଯୋଜନା ଓ ରୂପାୟନ ପାଇଁ ସଂଯୋଜନା କାମ ରାଜ୍ୟ ସ୍ତରରେ ହେବ ।*

*ବ୍ୟାଖ୍ୟା :* ଜନସାଧାରଣଙ୍କ ସାମୁହିକ ବିକାଶ ପାଇଁ ସରକାର ବିଭିନ୍ନ ବିକାଶ ମୂଳକ ବୃହତ୍ ପ୍ରକଳ୍ପ ବା ଯୋଜନା କାର୍ଯ୍ୟକାରୀ କରିଥାନ୍ତି। ଏହି ସବୁ ବୃହତ୍ ପ୍ରକଳ୍ପ ହେତୁ ବହୁ ଅଧିବାସୀ ଗୃହଶୂନ୍ୟ ହେବାରେ ଲାଗିଛନ୍ତି। ସେମାନଙ୍କୁ ଏପରିକି ଠିକ୍ ଭାବରେ ଥଇଥାନ ମଧ କରାଯାଉ ନାହିଁ ।

ଏବେଠାରୁ ଗ୍ରାମସଭାର ବିନାନୁମତିରେ କୌଣସି ପ୍ରକଳ୍ପ ବା ଯୋଜନା କାର୍ଯ୍ୟକାରୀ କରିବା ପାଇଁ ଜମିଦଖଲ କରାଯାଇପାରିବ ନାହିଁ । ସରକାର ଆବଶ୍ୟକସ୍ଥଳେ ଗ୍ରାମସଭାର ଅନୁମତି ମାଗିବେ । ଯଦି କୌଣସି ଅଞ୍ଚଳର ଗ୍ରାମବାସୀ ବିସ୍ଥାପିତ ହେବାକୁ ଥାଆନ୍ତି ତେବେ ସେହି ଅଞ୍ଚଳର ଗ୍ରାମସଭାର ଅନୁମତି ଏଦିଗରେ ଆବଶ୍ୟକ । ଏପରିକି ସେମାନଙ୍କୁ ଯେଉଁ ସ୍ଥାନରେ ଥଇଥାନ କରାଯିବ ସେସ୍ଥାନ ପାଇଁ ମଧ ଗ୍ରାମସଭାର ଅନୁମତି ଆବଶ୍ୟକ ।

*(ଞ) ଅନୁସୂଚୀତ ଅଞ୍ଚଳରେ କ୍ଷୁଦ୍ର ଜଳଯୋଗାଣ ନିର୍ମାଣ ତଥା ପରିଚାଳନା ପାଇଁ ଉପଯୁକ୍ତ ସ୍ତରରେ ପଞ୍ଚାୟତକୁ ଦାୟୀତ୍ୱ ଦିଆଯିବ ।*

*ବ୍ୟାଖ୍ୟା :* ଯଦି କିଛି ଜଳଯୋଜନା କୌଣସି ପଞ୍ଚାୟତ ପାଇଁ କରିବାକୁ ଥାଏ ତେବେ ସେହି ପଞ୍ଚାୟତକୁ ଏହି ଦାୟୀତ୍ୱ ଦିଆଯିବ । ଏହି ଜଳଯୋଜନା କହିଲେ ବନ୍ଧ, କଟା, ନାଳ ଇତ୍ୟାଦିକୁ ବୁଝାଏ । ବନ୍ଧ, କଟା, ନାଳ ଆଦି ତିଆରିରେ ବାହାରର କଣ୍ଟ୍ରାକ୍ଟରଙ୍କ ସିଧାସଳଖ କୌଣସି ଭୂମିକା ନାହିଁ । ଏହା ପଞ୍ଚାୟତ ଉପରେ ନିର୍ଭର କରୁଛି ଯେ ସେ କୌଣସି କଣ୍ଟ୍ରାକ୍ଟର ମାଧମରେ କରିବ କି ନିଜେ କରିବ । ସେହିପରି ଉକ୍ତ ଜଳଯୋଜନାର ରକ୍ଷଣାବେକ୍ଷଣ ଦାୟୀତ୍ୱ ମଧ ପଞ୍ଚାୟତର ରହିବ ।

*(ଟ) ଅନୁସୂଚୀତ ଅଞ୍ଚଳରେ ଲଘୁ ଖଣିଜ ସଂପଦ ପାଇଁ ଲାଇସେନ୍ସ ବା ଲିଜ ନେବା ବେଳେ ଉପଯୁକ୍ତ ସ୍ତରରେ ଗ୍ରାମସଭା ବା ପଞ୍ଚାୟତର ସ୍ୱୀକୃତି ବାଧ୍ୟତାମୂଳକ କରାଯିବ ।*

ବ୍ୟାଖ୍ୟା : ପଞ୍ଚାୟତର ନିଜ ଅଞ୍ଚଳରେ ଯଦି କିଛି ଲଘୁ ଖଣିଜ ସମ୍ପଦ ଥାଏ ତେବେ ତାର ଲିଜ ବା ଲାଇସେନ୍ସ ଦେବାବେଳେ ଗ୍ରାମସଭା ବା ପଞ୍ଚାୟତର ଅନୁମତି ନିହାତି ଆବଶ୍ୟକ । ତେଣୁ ଗ୍ରାମସଭା ବା ପଞ୍ଚାୟତର ଅନୁମତି ପାଇଲାପରେ ହିଁ କୌଣସି ଖଣିକୁ ଖୋଳାଯାଇପାରେ । ଯଦି ଏହା ନିଜ ଅଞ୍ଚଳର ଲୋକଙ୍କ ସ୍ୱାର୍ଥରେ ବାଧା ଆଣୁଥାଏ ତେବେ ଗ୍ରାମସଭା ବା ପଞ୍ଚାୟତ ଚାହିଁଲେ ଅନୁମତି ଦେବନାହିଁ ।

ଧାରା ଡ(୧) ରେ ଦର୍ଶାଯାଇଛି ଯେ ଗ୍ରାମ ପଞ୍ଚାୟତ କୌଣସି ବି ଯୋଜନା, କାର୍ଯ୍ୟକ୍ରମ ଓ ପ୍ରକଳ୍ପ ଗ୍ରାମସ୍ତରରେ କାର୍ଯ୍ୟକାରୀ କରିବାକୁ ଥିଲେ ଗ୍ରାମସଭାର ଅନୁମୋଦନ ଆବଶ୍ୟକ । ସେହି ନିୟମ ଏଠାରେ ମଧ୍ୟ କାର୍ଯ୍ୟକାରୀ ହେବ । ଗ୍ରାମ ପଞ୍ଚାୟତ ଯଦି କୌଣସି ଖଣିପାଇଁ ଅନୁମତି ଦେଇ ଦିଏ ତେବେ ସେ ଗ୍ରାମସଭା ନିକଟରେ ଏଥିପାଇଁ ଉତ୍ତର ଦାୟୀ ରହିବ । ତେଣୁ ଗ୍ରାମସଭାର ନିଷ୍ପତ୍ତିକୁ ଉପେକ୍ଷା କରି ଗ୍ରାମ ପଞ୍ଚାୟତ କୌଣସି ଖଣିକୁ ଲିଜ୍ ଦେଇ ପାରିବ ନାହିଁ । ଏହି ଲଘୁ ଖଣିଜ କହିଲେ ପଥର ଖଣି, ମୋରମ, ବାଲି ଇତ୍ୟାଦିକୁ ବୁଝାଏ ।

*(ଠ) ଅନୁସୂଚୀତ ଅଞ୍ଚଳରେ ଲଘୁ ଖଣିଜ ସଂପଦ ନିଲାମ କ୍ଷେତ୍ରରେ ରିହାତି ଦିଆଯିବା ପୂର୍ବରୁ ଗ୍ରାମସଭା ବା ପଞ୍ଚାୟତ ଅନୁମତି ନେବାକୁ ବାଧ୍ୟତାମୂଳକ କରାଯିବ ।*

*(ଢ) ଅନୁସୂଚୀତ ଅଞ୍ଚଳରେ ପଞ୍ଚାୟତ ଗୁଡ଼ିକୁ ସ୍ୱଶାସନଗତ ଅନୁଷ୍ଠାନର ରୂପ ଦେବା ପାଇଁ ଯେତେବେଳେ କିଛି ନିର୍ଦ୍ଦିଷ୍ଟ କ୍ଷମତା ବା ପ୍ରଭୁତ୍ୱ ପ୍ରଦାନ କରାଯାଇଛି, ସେ ସମୟରେ ରାଜ୍ୟବ୍ୟବସ୍ଥାପକ ସଭା ଆବଶ୍ୟକ ସ୍ଥଳରେ ପଞ୍ଚାୟତ ଓ ଗ୍ରାମସଭାକୁ କେତେକ କ୍ଷମତା ପ୍ରଦାନ କରିବେ ।*

ବ୍ୟାଖ୍ୟା : ରାଜ୍ୟସରକାର ବିଲ୍ ଆଣିଲା ବେଳେ ପଞ୍ଚାୟତ ଓ ଗ୍ରାମସଭାକୁ କେତେକ ସ୍ୱତନ୍ତ୍ର ବିଷୟରେ କ୍ଷମତା ଦେବେ । ଏହି କ୍ଷମତା ପ୍ରଦାନର ଅର୍ଥହେଲା, ପଞ୍ଚାୟତ ସମିତି ଜିଲ୍ଲା ସମିତି ଏପରିକି ରାଜ୍ୟ ସରକାର ସେ ପ୍ରକାରର

ସ୍ୱତନ୍ତ୍ର କ୍ଷମତାରେ କୌଣସି ପ୍ରକାରର ହସ୍ତକ୍ଷେପ କରିବେ ନାହିଁ । ଗ୍ରାମସଭାର ନିଷ୍ପତ୍ତି ଏ ଦିଗରେ ଶେଷ ନିଷ୍ପତ୍ତି ହେବ । ସେଗୁଡ଼ିକ ହେଲା :

**(୧) କୌଣସି ନିଶାଦ୍ରବ୍ୟର ବିକ୍ରି ବା ସେବନକୁ ନିଷିଦ୍ଧ କରିବା, ନିୟନ୍ତ୍ରଣ ବା ସୀମିତ କରିବା ।**

*ବ୍ୟାଖ୍ୟା :* ବର୍ତ୍ତମାନର ପରିସ୍ଥିତିରେ ଏହି ନିୟମଟି ଗୁରୁତ୍ୱପୂର୍ଣ୍ଣ ଅଟେ । ଏବେ ସାରା ରାଜ୍ୟରେ ଓଡିଶା ସରକାରଙ୍କ ମହୁଲି ମଦ ପ୍ରଚଳନକୁ ବିରୋଧ କରି ମଦ ବିରୋଧି ଆନ୍ଦୋଳନ ଜୋର୍ ସୋର୍‌ରେ ଚାଲିଛି । ତେବେ ଅନୁସୂଚୀତ ଅଞ୍ଚଳ ପାଇଁ ଏହି ନିୟମ ବହୁତ ସହାୟକ ହେବ । ଏଣିକି ଅନୁସୂଚୀତ ଅଞ୍ଚଳରେ ଗ୍ରାମସଭା ଚାହିଁଲେ ନିଜ ଗ୍ରାମ ମଧ୍ୟରେ ମଦ ପ୍ରଚଳନକୁ ବାରଣ କରିପାରିବେ ।

**(୨) ଲଘୁ ବନଜାତ ଦ୍ରବ୍ୟର ସ୍ୱତ୍ୱାଧିକାର**

ଲଘୁ ବନଜାତ ଦ୍ରବ୍ୟର ସଂଗ୍ରହ, ପ୍ରକ୍ରିୟାକରଣ ଓ ବିକ୍ରୟ ଉପରେ ଗ୍ରାମସଭାର ମାଲିକାନା ରହିବ । ଗ୍ରାମସଭା ଚାହିଁଲେ ଲଘୁବନଜାତ ଦ୍ରବ୍ୟକୁ ବିକ୍ରି କରିପାରିବ ବା କେବଳ ନିଜ ବ୍ୟବହାର ପାଇଁ ରଖି ପାରିବ । ଲଘୁବନଜାତ ଦ୍ରବ୍ୟ କାହାକୁ ବିକ୍ରି କରାଯିବ ସେକଥା ମଧ୍ୟ ଗ୍ରାମସଭା ଠିକ୍ କରିବ ।

**(୩) ଅନୁସୂଚୀତ ଅଞ୍ଚଳରେ କୌଣସି ପ୍ରକାରର ଆଦିବାସୀ ଜମି ହସ୍ତାନ୍ତରୀକରଣକୁ ରୋକିବା ପାଇଁ ପଦକ୍ଷେପ ନେବା ସହିତ ବେନିୟମ ଭାବରେ ଆଦିବାସୀଙ୍କ ଜମି ହସ୍ତାନ୍ତରୀକରଣ ହୋଇଥିଲେ ତାହାକୁ ପୁନରୁଦ୍ଧାର କରିବ ।**

*ବ୍ୟାଖ୍ୟା :* ଆଦିବାସୀମାନଙ୍କ ସରଳତାର ସୁଯୋଗ ନେଇ ବହୁ ଚାଲାକ ଲୋକ ବହୁ ସ୍ଥାନରେ ଆଦିବାସୀଙ୍କ ଜମିକୁ ଜବରଦଖଲ କରି ନେଇଛନ୍ତି । ଏପରିକି ନାମକୁ ମାତ୍ର ମୂଲ୍ୟରେ ମଧ୍ୟ ପଟ୍ଟା କରିନେବାର ଉଦାହରଣ ରହିଛି । ଏଥିରେ ଆଦିବାସୀମାନେ ହିଁ ସବୁଠାରୁ ଅଧିକ କ୍ଷତିଗ୍ରସ୍ତ ହେଉଛନ୍ତି । ଆଦିବାସୀଙ୍କ ସରଳତାର ଫାଇଦା ଅଣ-ଆଦିବାସୀ, ବ୍ୟବସାୟୀ ଓ କଂପାନୀମାନେ ନେଉଛନ୍ତି । ଏପରିକି ସେମାନେ ଯେତିକି ଜାଗା ନାମକୁ ମାତ୍ର ମୂଲ୍ୟରେ କିଣୁଛନ୍ତି ତା'ଠାରୁ ଅଧିକ ଜବରଦଖଲ କରିନେଉଛନ୍ତି । ଫଳରେ ବହୁ

ଆଦିବାସୀ ଏଥିପାଇଁ ନିଜର ଚାଷଜମି ହରାଇଲେଣି । ଏହାକୁ ରୋକିବା ପାଇଁ ଗ୍ରାମସଭାକୁ ଅଧିକାର ଦିଆଯାଇଛି । ଯଦି ସେପରି କିଛି ଘଟୁଥାଏ ତେବେ ଗ୍ରାମସଭା ସେଥିରେ ହସ୍ତକ୍ଷେପ କରି ଜମିକୁ ବିକ୍ରି ହେବା ବା ଜବରଦଖଲରୁ ରୋକି ପାରିବ । ଏପରିକି ଅତୀତରେ ଯଦି ଏପରି ଘଟିଯାଇଥାଏ ତେବେ ମଧ ଗ୍ରାମସଭା ଆଦିବାସୀଙ୍କ ଜମିକୁ ଉଦ୍ଧାର କରି ପାରିବ ।

**(୪) ଗାଁ ହାଟର ପରିଚାଳନା କ୍ଷମତା ହାତକୁ ନେବା (ଯେଉଁ ନାଁରେ ତାକୁ ଡକା ଯାଉନା କାହିଁକି)**

*ବ୍ୟାଖ୍ୟା :* ଗ୍ରାମସଭା ଗାଁ ହାଟ ଓ ନିୟମିତ ବଜାରର ପରିଚାଳନା କ୍ଷମତା ନିଜ ହାତରେ ରଖିବ । ଏ କ୍ଷେତ୍ରରେ ଲାଇସେନ୍‌ସ ଦେବା ବା ଅନୁମତି ଦେବା କ୍ଷମତା ଗ୍ରାମସଭାର ରହିବ ।

**(୫) ଆଦିବାସୀମାନଙ୍କୁ ଦିଆଯାଉଥିବା କରଜ କ୍ଷେତ୍ରରେ ନିୟନ୍ତ୍ରଣ କ୍ଷମତା ରହିବ ।**

*ବ୍ୟାଖ୍ୟା :* ଆଦିବାସୀ ଅଞ୍ଚଳରେ ସାହୁକାର ହିଁ ସବୁ ସମୟରେ ଆଦିବାସୀଙ୍କୁ ଋଣ ଦେଇ ଅଧିକ ସୁଧ ହାସଲ କରେ । ଏପରିକି ଅଧିକ ସୁଧ ହେତୁ ବହୁ ଆଦିବାସୀ ନିଜ ଘରକରଣା ଜିନିଷ ଏପରିକି ନିଜର ଘର ଓ ଜମି ମଧ ହରାଇଛନ୍ତି । ତେଣୁ ଏବେଠାରୁ ଏ ପ୍ରଥା ବନ୍ଦ ହେଲା । ସାହୁକାର ଏଣିକି ମନଇଛା ସୁଧ ଆଦାୟ କରି ପାରିବ ନାହିଁ । ଏହାପରେ ଗ୍ରାମସଭାର ସାହୁକାର ଉପରେ ପୂର୍ଣ୍ଣ କର୍ତ୍ତୃତ୍ୱ ରହିବ ।

ଏମିତି ବି ନମୁନା ଅଛି ଯେ ବାହାର ବ୍ୟବସାୟୀ ଦଲାଲ୍‌ମାନେ ଆବଶ୍ୟକ ସମୟରେ ଆଦିବାସୀମାନଙ୍କୁ ଋଣ ଦେଇ ଠିକ୍ ଫସଲ ଆଦାୟ ସମୟରେ କିମ୍ବା ବନଜାତ ଦ୍ରବ୍ୟ ସଂଗ୍ରହ ସମୟରେ କମ୍ ପଇସାରେ କିଣି ନିଅନ୍ତି । ଏପରିକି ଶ୍ରମିକ କଣ୍ଟ୍ରାକ୍ଟରମାନେ କରଜ ଦେଇ ପରେ ଆଦିବାସୀମାନଙ୍କୁ ଗୋତି ଖଟାନ୍ତି । ସ୍ଥଳବିଶେଷରେ ସମବାୟସମିତି ଓ ବ୍ୟାଙ୍କ ମଧ ଆଦିବାସୀଙ୍କୁ ଋଣ ଦେଇ ପରେ ହଇରାଣ କରିଥାନ୍ତି । ଗ୍ରାମସଭାର ଏହାପରଠାରୁ ଏ ସବୁକୁ ନିୟନ୍ତ୍ରଣ ପାଇଁ ସଂପୂର୍ଣ୍ଣ କ୍ଷମତା ରହିବ ।

**(୬) ସାମାଜିକ କ୍ଷେତ୍ରରେ ସମସ୍ତ ଅନୁଷ୍ଠାନ ଏବଂ କର୍ମକର୍ତ୍ତାମାନଙ୍କୁ ନିୟନ୍ତ୍ରିତ କରିବା ପାଇଁ କ୍ଷମତା ଦେବା ।**

*ବ୍ୟାଖ୍ୟା* : ପ୍ରାୟ ଆଦିବାସୀ ଅଞ୍ଚଳ ଦୁର୍ଗମ ହୋଇଥିବା ହେତୁ ସ୍କୁଲକୁ ଶିକ୍ଷକ ଆସନ୍ତି ନାହିଁ କିମ୍ବା ଡାକ୍ତରଖାନାରେ ଡାକ୍ତର ନଥାନ୍ତି । ସେହିପରି ଗ୍ରାମସେବକ ମଧ୍ୟ ଗାଁକୁ ଆସେ ନାହିଁ । ଏବେଠାରୁ ସେମାନେ ନିଜର ଅନିୟମିତତା ପାଇଁ ଗ୍ରାମସଭା ନିକଟରେ ଉତ୍ତର ଦାୟୀ ରହିବେ । ଗ୍ରାମସଭା ଏହାପରଠାରୁ ସରକାରୀ କର୍ମଚାରୀ ଯେପରି ନିଜର ଦାୟିତ୍ୱରେ ଯୋଗ ଦିଅନ୍ତି ସେଥିପାଇଁ ବାଧ୍ୟ କରି ପାରିବ । ଏଥିରେ ସ୍ୱାସ୍ଥ୍ୟ, ଶିକ୍ଷା ଅନୁଷ୍ଠାନ, ପଶୁଡାକ୍ତରଖାନା, ବିଦ୍ୟୁତ୍ ଇତ୍ୟାଦି ବିଭାଗ ଆସୁଛି । ଏପରିକି ସ୍ୱେଚ୍ଛାସେବୀ ସଂଗଠନ ଏହାର କର୍ମକର୍ତ୍ତା ଓ ଚର୍ଚ୍ଚ ଆଦି ମଧ୍ୟ ନିଜ କାର୍ଯ୍ୟକଳାପ ପାଇଁ ଗ୍ରାମସଭା ନିକଟରେ ଉତ୍ତର ଦାୟୀ ରହିବେ ।

**(୭) ଆଦିବାସୀ ଉପଯୋଜନା ସମେତ ସ୍ଥାନୀୟ ଯୋଜନା ଓ ଏହାର ସମ୍ବଳ ଉପରେ ନିୟନ୍ତ୍ରଣ କ୍ଷମତା ରହିବ ।**

*ବ୍ୟାଖ୍ୟା* : ଆଦିବାସୀ ଉପଯୋଜନା ତଥା ଆଦିବାସୀ ବିକାଶ ପାଇଁ ବିଭିନ୍ନ ଯୋଜନା ନାମରେ ଯେଉଁ ଦୁର୍ନୀତି ଚାଲିଛି ତାହା ସମସ୍ତେ ଜାଣନ୍ତି । ଏଥିରେ ପ୍ରକୃତ ଆଦିବାସୀର ନିୟନ୍ତ୍ରଣ କରିବାର କୌଣସି କ୍ଷମତା ନଥିବା ହେତୁ ଆଦିବାସୀ ନାମରେ ଆଜି ପର୍ଯ୍ୟନ୍ତ ଅର୍ଥ ଆତ୍ମସାତ୍ ହୋଇଛି । ଏଣିକି ଗ୍ରାମସଭାର ଏହିସବୁ ଯୋଜନା ଉପରେ ନିୟନ୍ତ୍ରଣ ରହିବ । ବିଭିନ୍ନ ଯୋଜନାରେ ଥିବା ଅଦରକାରୀ ବା ଆବଶ୍ୟକତା ଠାରୁ ଅଧିକ ଖର୍ଚ୍ଚ ବ୍ୟବସ୍ଥାକୁ ବାଦ୍ ଦେଇ ତାହା କିପରି ପ୍ରକୃତରେ ଅନୁସୂଚୀତ ଅଞ୍ଚଳର ଉପକାରରେ ଆସିପାରିବ ସେଥିପାଇଁ ଗ୍ରାମସଭା ଉକ୍ତ ଯୋଜନାକୁ ଆବଶ୍ୟକମତେ ପରିବର୍ତ୍ତନ ମଧ୍ୟ କରିପାରିବ ।

***(୮) ପଞ୍ଚାୟତ ଗୁଡ଼ିକ ସ୍ୱୟଂଶାସିତ ଭାବରେ କାର୍ଯ୍ୟକରିବାକୁ ହେଲେ ଆବଶ୍ୟକୀୟ କ୍ଷମତା ଓ ଅଧିକାର ଦେବା ପାଇଁ ରାଜ୍ୟବ୍ୟବସ୍ଥାପକ ସଭା ଆଇନଗତ ସୁବିଧା ଦେବା ବେଳେ ତଳସ୍ତରରେ ପଞ୍ଚାୟତ ବା ଗ୍ରାମସଭାକୁ ସୁରକ୍ଷା ଦେବାପାଇଁ ଉଦ୍ୟମ କରିବେ ।***

ବ୍ୟାଖ୍ୟା : ରାଜ୍ୟସରକାର ବିଲ୍ ଆଣିବା ସମୟରେ ପଞ୍ଚାୟତ ଗୁଡ଼ିକ ଯେପରି ନିଜର ସମ୍ବଳ ଏକାଠି କରିପାରନ୍ତି ସେଥିପାଇଁ ବିଲ୍‌ରେ ସୁବିଧା ଦେବେ । ଉକ୍ତ ନିୟମରେ ଗ୍ରାମସଭାର କ୍ଷମତା ସଂପର୍କରେ ଯେଉଁପରି ସୂଚନା ଦିଆଯାଇଛି ସେସବୁକୁ କାର୍ଯ୍ୟକାରୀ କରିବା ସମୟରେ ଗ୍ରାମସଭା ଉପରେ ବାଧା ଆସିପାରେ । ବିଶେଷକରି ଧାରା ଗ୍ରାମସଭା ଯେଉଁଠାରେ ନିଜର ଗୋଷ୍ଠୀ ସମ୍ବଳର ସୁରକ୍ଷା କରିବ ସେଥିରେ ବାହ୍ୟ ଆକ୍ରମଣର ବହୁ ସମ୍ଭାବନା ମଧ ରହିଛି । ତେଣୁ ବ୍ୟବସ୍ଥାପକ ସଭା ଏ ଦିଗରେ ଯତ୍ନବାନ ହେବେ ଯେପରି ଗ୍ରାମସଭା ସୁଚାରୁ ରୂପେ ତାହାର ଗୁରୁଦାୟୀତ୍ୱ ତୁଲାଇ ପାରିବେ ।

***(ଣ) ଅନୁସୂଚୀତ ଅଞ୍ଚଳରେ ଜିଲ୍ଲା ସ୍ତରରେ ପ୍ରଶାସନିକ ବ୍ୟବସ୍ଥା ନିରୂପଣ କରିବା ସମୟରେ ସମ୍ବିଧାନର ଷଷ୍ଠ ଅନୁସୂଚୀକୁ ଅନୁକରଣ କରିବା ପାଇଁ ଉଦ୍ୟମ କରିବେ ।***

ବ୍ୟାଖ୍ୟା : ସମ୍ବିଧାନର ଷଷ୍ଠ ଅନୁସୂଚୀତ ଅଞ୍ଚଳ ଭାବରେ ଘୋଷଣା କରାଯାଇଥିବା ଜିଲ୍ଲାମାନଙ୍କରେ ଜିଲ୍ଲା ସ୍ୱୟଂଶାସିତ କାଉନ୍‌ସିଲ୍ ଗଠନ ସଂପର୍କରେ ପ୍ରସ୍ତାବ ରହିବ । ଏହି କାଉନସିଲ୍‌ର ଗଠନ ଏହାର ଦାୟିତ୍ୱ ଇତ୍ୟାଦି ସଂପର୍କରେ ଷଷ୍ଠ ଅନୁସୂଚୀରେ ଉଲ୍ଲେଖ ରହିଛି । ତାହାକୁ କାର୍ଯ୍ୟକାରୀ କରାଯିବ ।

***୫. ସଂବିଧାନର ନବମସୂଚୀରେ ଉକ୍ତ ନିୟମ ଦ୍ୱାରା ଆବଶ୍ୟକୀୟ ସଂଶୋଧନ ବିଲୁପ୍ତ ସତ୍ତ୍ୱେ ଅନୁସୂଚୀତ ଅଞ୍ଚଳର ପଞ୍ଚାୟତ ସମ୍ବନ୍ଧିତ ଅନ୍ୟ କୌଣସି ବି ନିୟମ ବା ପ୍ରସ୍ତାବ ଯାହା କି ଉକ୍ତ ନିୟମ ରାଷ୍ଟ୍ରପତିଙ୍କ ଅନୁମୋଦନ ପାଇବା ପୂର୍ବରୁ ଲାଗୁ ହୋଇଛି ଏବଂ ଯାହାରକି ନବମ ସୂଚୀ ସହିତ ସାମଞ୍ଜସ୍ୟ ରହୁଛି ତାହା ସେତେଦିନ ପର୍ଯ୍ୟନ୍ତ ବଳବତ୍ତର ରହିବ ଯେତେଦିନ ପର୍ଯ୍ୟନ୍ତ କୌଣସି ଉପଯୁକ୍ତ ବ୍ୟବସ୍ଥା ଦ୍ୱାରା ସେ ସବୁକୁ ସଂଶୋଧିତ / ଉଚ୍ଛେଦ କରା ନ ଯାଇଛି ବା ଏହି ନିୟମ ପାସ୍ ହେବାର ଏକ ବର୍ଷ ନ ବିତିଛି ।***

*ଏହି ସର୍ତ୍ତରେ ଯେ, ଉକ୍ତ ତାରିଖ ପୂର୍ବରୁ ଥିବା ସମସ୍ତ ପଞ୍ଚାୟତ ନିଜର ପୂର୍ବ କାର୍ଯ୍ୟକାଳ ସରିବା ପର୍ଯ୍ୟନ୍ତ କାର୍ଯ୍ୟ କରିବ । ଅଥବା ରାଜ୍ୟ ସରକାରଙ୍କ ଦ୍ୱାରା ବିଧାନସଭାରେ ଗୃହୀତ କୌଣସି ପ୍ରସ୍ତାବ ଉକ୍ତ ପଞ୍ଚାୟତକୁ ଭାଙ୍ଗି ଦିଆଯାଇ ପାରେ ।*

*ବ୍ୟାଖ୍ୟା* : ଉକ୍ତ ନିୟମ ଅନୁସାରେ ପ୍ରତ୍ୟେକ ରାଜ୍ୟସରକାର ଆସନ୍ତା ଡିସେମ୍ବର ୨୪, ୧୯୯୭ ମଧ୍ୟରେ ବିଧାନସଭାରେ ଏ ପ୍ରସଙ୍ଗରେ ଏକ ନିୟମ ଗୃହୀତ କରାଇନେବ । ଓଡ଼ିଶା ସରକାର ମଧ ଓଡ଼ିଶା ପଞ୍ଚାୟତ ନିୟମ (ଅନୁସୂଚୀତ ଅଞ୍ଚଳକୁ ସଂପ୍ରସାରଣ) ୧୯୯୭ ରେ ନାମରେ ଏକ ନିୟମ ବିଧାନସଭାରେ ଡିସେମ୍ବର ୨୪,୧୯୯୭ ପୂର୍ବରୁ ଗୃହୀତ କରାଇନେବା ଆବଶ୍ୟକ । ତାପରେ ଅନୁସୂଚୀତ ଅଞ୍ଚଳ ପୁନର୍ଗଠନ କରାଯାଇ ଏ ଅଞ୍ଚଳରେ ନୂଆ ନିୟମ ଅନୁସାରେ ପୁନର୍ବାର ନିର୍ବାଚନ କରାଯିବ ।

## ସମ୍ବିଧାନର ୫ମ ଅନୁଚ୍ଛେଦରେ ଥିବା ଓଡ଼ିଶାର ଅନୁସୂଚୀତ ଅଞ୍ଚଳ

| | ଜିଲ୍ଲା | ଅନୁସୂଚୀତ ଅଞ୍ଚଳ |
|---|---|---|
| ୧. | ମୟୂରଭଞ୍ଜ | ସମଗ୍ର ଜିଲ୍ଲା |
| ୨. | ସୁନ୍ଦରଗଡ଼ | ସମଗ୍ର ଜିଲ୍ଲା |
| ୩. | କୋରାପୁଟ | ସମଗ୍ର ଜିଲ୍ଲା |
| ୪. | ରାୟଗଡ଼ା | ସମଗ୍ର ଜିଲ୍ଲା |
| ୫. | ମାଲକାନଗିରି | ସମଗ୍ର ଜିଲ୍ଲା |
| ୬. | ନବରଙ୍ଗପୁର | ସମଗ୍ର ଜିଲ୍ଲା |
| ୭. | ବାଲେଶ୍ୱର | ନୀଳଗିରି ବ୍ଲକ |
| ୮. | କେନ୍ଦୁଝର | ୧. କେନ୍ଦୁଝର ତହସିଲ |
| | | ୨. ତେଲକୋଇ ତହସିଲ |
| | | ୩. ଚଂପୁଆ ତହସିଲ |
| | | ୪. ବଡ଼ବିଲ ତହସିଲ |
| ୯. | ସମ୍ବଲପୁର | କୁଚିଣ୍ଡା ତହସିଲ |
| ୧୦. | କନ୍ଧମାଳ | ୧. କନ୍ଧମାଳ ତହସିଲ |
| | | ୨. ବାଲିଗୁଡ଼ା ତହସିଲ |
| | | ୩. ଜି. ଉଦୟଗିରି ତହସିଲ |
| ୧୧. | କଳାହାଣ୍ଡି | ୧. ଥୁଆମୂଳ ରାମପୁର ତହସିଲ |
| | | ୨. ଲାଞ୍ଜିଗଡ଼ ବ୍ଲକ୍ |
| ୧୨. | ଗଜପତି | ୧. ଗୁମା ବ୍ଲକ୍ |
| | | ୨. ରାୟଗଡ଼ା ବ୍ଲକ୍ |
| | | ୩. ଆର. ଉଦୟଗିରି ତହସିଲ |
| ୧୩. | ଗଂଜାମ | ୧. ସୋରଡ଼ା ତହସିଲ (ଗାଜଲ ବାଡ଼ି ଓ ଗୋଛା ଗ୍ରାମପଞ୍ଚାୟତ ବ୍ୟତୀତ) |

# ଭବିଷ୍ୟତ କାର୍ଯ୍ୟପନ୍ଥା

କେବଳ କେନ୍ଦ୍ର ସରକାର ନିୟମ ପ୍ରସ୍ତୁତି କରିଦେବା ପରେ ଏ କଥାର ଅନ୍ତ ହୋଇଯାଉନି । କେନ୍ଦ୍ର ସରକାରଙ୍କ ମୂଳ ନିୟମ ଢ଼ାଞ୍ଚାରେ ପ୍ରତ୍ୟେକ ରାଜ୍ୟ ସରକାର ନିଜ ରାଜ୍ୟର ତଫସିଲଭୁକ୍ତ ଅଞ୍ଚଳ ପାଇଁ ସ୍ୱତନ୍ତ୍ର ଆକ୍ଟ ତିଆରି କରିବାକୁ ବାଧ । ସେହିଭଳି ଓଡ଼ିଶା ସରକାରଙ୍କୁ ପଞ୍ଚାୟତ ସଂପ୍ରସାରଣ ଆକ୍ଟ ୧୯୯୭ ନାମରେ ନୂତନ ନିୟମ ଆସନ୍ତା ଡିସେମ୍ବର ୨୪, ୧୯୯୭ ପୂର୍ବରୁ ପ୍ରସ୍ତୁତ କରିବାକୁ ହେବ । ତେବେ ସେ ନିୟମଟିକୁ ଅଧିକ ଲୋକାଭିମୁଖୀ କରିବା ପାଇଁ ଏବଂ ରାଜ୍ୟ ମଧ୍ୟରେ ଥିବା ସମସ୍ତ ଆଦିବାସୀ ଅଞ୍ଚଳ ଯେପରି ଏହାର ସୁବିଧା ପାଇପାରିବେ ସେଥିପାଇଁ ରାଜ୍ୟ ମଧ୍ୟରେ କେତେକ ନିଷ୍ଠାପର ଉଦ୍ୟମର ଆବଶ୍ୟକତା ରହଛି । ପ୍ରଥମେ ଯେଉଁ କେତେକ କାର୍ଯ୍ୟ କରିବାକୁ ହେବ ତାହାହେଲା :

**୧- ମାଡା ଅଞ୍ଚଳକୁ ଅନ୍ତର୍ଭୁକ୍ତ କରାଯାଉ :**

ସଂବିଧାନର ତଫସିଲଭୁକ୍ତ ଅଞ୍ଚଳ ନିର୍ଦ୍ଦେଶ ୧୯୭୭ ରେ ପ୍ରତ୍ୟେକ ରାଜ୍ୟରେ ଆଦିବାସୀ ବହୁଳ ଅଞ୍ଚଳକୁ ତଫସିଲଭୁକ୍ତ ଅଞ୍ଚଳରେ ଚିହ୍ନଟ କରାଯାଇଥିଲା । ୧୯୭୪ ମସିହାରେ ସ୍ଥିରୀକୃତ ଆଦିବାସୀ ଉପଯୋଜନା (Tribal sub-plan) ର କାର୍ଯ୍ୟକାରୀତା ପାଇଁ ଏହିପରି ଚିହ୍ନଟ କରାଯାଇଥିଲା। ଚିହ୍ନଟ କରିବାର ସମସ୍ତ କ୍ଷମତା ରାଷ୍ଟ୍ରପତିଙ୍କ ହାତରେ କେନ୍ଦ୍ରିଭୁତ ହୋଇଥିଲା । ସଂବିଧାନର ନିୟମ ଅନୁସାରେ ୧୯୭୮ ପରେ ଅନ୍ୟ ସବୁ ଆଦିବାସୀ ବହୁଳ ଅଞ୍ଚଳକୁ ତଫସିଲଭୁକ୍ତ ଅଞ୍ଚଳ ରପେ ଘୋଷଣା କରିବାର କ୍ଷମତା ରାଷ୍ଟ୍ରପତିଙ୍କ ଠାରୁ କାଢ଼ିନିଆଗଲା । ରାଷ୍ଟ୍ରପତି ତଫସିଲଭୁକ୍ତ ଅଞ୍ଚଳ କମାଇ ପାରିବେ ମାତ୍ର ବଢ଼ାଇ ପାରିବେନାହିଁ ବୋଲି ସଂବିଧାନରେ ନିୟମ ରହିଲା । ହେଲେ ୧୯୭୮ ପରେ ଆହୁରି କେତେକ ଆଦିବାସୀ ବହୁଳ ଅଞ୍ଚଳ ରହିଗଲା ଯାହାକୁ ମାଡା ( Modified Area Development Approach) କ୍ଷେତ୍ର

ରୂପେ ଚିହ୍ନଟ କରାଗଲା । ଏହି ମାଡା କ୍ଷେତ୍ର ମୁଖ୍ୟତଃ ଆଦିବାସୀ ଅଞ୍ଚଳ ଅଟେ (ଏହାର ଏକ ତାଲିକା ଅନ୍ୟତ୍ର ଦିଆଯାଇଛି) ।

ଏହି ମାଡା କ୍ଷେତ୍ର ଗୁଡିକ ଯେଉଁଗୁଡିକ କି ନୂତନ ପଞ୍ଚାୟତ ସଂପ୍ରସାରଣ ନିୟମରୁ ବଞ୍ଚିତ ହେବେ ସେ ସବୁ ଘୋଷଣା କରିବା ଜରୁରୀ । କାରଣ ୭୩ତମ ସଂଶୋଧନ ଅନୁସାରେ ଓଡିଶା ପଞ୍ଚାୟତ ଆକ୍ଟ କୌଣସି ଦୃଷ୍ଟିରୁ ମାଡା କ୍ଷେତ୍ର ପାଇଁ ମଧ ଅନୁକୂଳ ନୁହେଁ । ତେବେ ମାଡା କ୍ଷେତ୍ର ସବୁକୁ ଅନୁସୂଚୀତ ଅଞ୍ଚଳ ଘୋଷଣା ପାଇଁ ରାଜ୍ୟସରକାରଙ୍କ ମାଧମରେ କେନ୍ଦ୍ର ସରକାରଙ୍କ ଉପରେ ଚାପ ସୃଷ୍ଟି କରାଯାଇପାରେ ।

୨- **ପ୍ରଶାସନିକ ପୁନର୍ଗଠନ :**

ଅନୁସୂଚୀତ ଅଞ୍ଚଳ ସବୁ ବହୁତ ବିକ୍ଷିପ୍ତ ଭାବରେ ରହିଥିବା ହେତୁ ଏବଂ ଉକ୍ତ ଅଞ୍ଚଳ ସବୁ ସାଧାରଣ ଅଞ୍ଚଳ ଦ୍ୱାରା ପ୍ରଭାବିତ ହେଉଥିବା ହେତୁ ପ୍ରଶାସନିକ ସ୍ତରରେ ବିକ୍ଷିପ୍ତ ଅଂଶକୁ ଏକ ମୁଖ୍ୟ ଅଂଶ ସହିତ ସାମିଲ କରିବା ଜରୁରୀ ।

୩- **ଆକ୍ଟ ପାଇଁ ଆଦିବାସୀ ସଚେତନତା :**

କେନ୍ଦ୍ର ସରକାରଙ୍କ ପଞ୍ଚାୟତ ସଂପ୍ରସାରଣ ଆଇନ ପ୍ରତ୍ୟେକ ରାଜ୍ୟ ପାଇଁ ଏକ ନିର୍ଦ୍ଦେଶ ଅଟେ । ତଦନୁଯାୟୀ ରାଜ୍ୟ ବିଧାନସଭା ନିଜ ରାଜ୍ୟର ଅନୁସୂଚୀତ ଅଞ୍ଚଳ ପାଇଁ ସ୍ୱତନ୍ତ୍ର ଆକ୍ଟ ପ୍ରସ୍ତୁତ କରିବାକୁ ହେବ । ଯେହେତୁ ଓଡିଶା ସରକାର ମଧ ଏକ ଆକ୍ଟ ଅନୁସୂଚୀତ ଅଞ୍ଚଳ ପାଇଁ ଆଣିବେ ତେବେ ସେହି ଆକ୍ଟରେ ଯେପରି ସମସ୍ତ ପ୍ରସ୍ତାବ ଠିକ୍ ଭାବରେ ରହେ ଏବଂ ପ୍ରଶାସନ ଏଥିରେ ଅଧିକ ଚାଲାକି ଯେପରି ନକରେ (କ୍ଷମତା ନିଜ ହାତରେ ରଖି ନେବା ପାଇଁ) ସେଥିପାଇଁ ଜନଆନ୍ଦୋଳନ ସବୁର ଆବଶ୍ୟକତା ରହିଛି । ଆଦିବାସୀ ଅଞ୍ଚଳରେ ସଚେତନତା ହିଁ ଏଥିପାଇଁ ପ୍ରକୃଷ୍ଟ ଉପାୟ ଅଟେ ।

ଶେଷରେ ଓଡିଶା ସରକାର ଯେପରି ନିୟମଟିକୁ ଅନୁସୂଚୀତ ଅଞ୍ଚଳର ସାମଗ୍ରିକ ବିକାଶ ପାଇଁ ମାନି ନିଅନ୍ତି ସେଥିପାଇଁ ସମାଜର ସବୁ କୋଣରୁ ସରକାରଙ୍କ ଉପରେ ବିଭିନ୍ନ ମାଧମରେ ଚାପ ସୃଷ୍ଟି କରିବା ଆବଶ୍ୟକ ଅଟେ ।

# ଓଡ଼ିଶାର ଲୋକସଂଖ୍ୟା ଓ ଆଦିବାସୀ

୧୯୯୧ ର ଜନଗଣନା ଅନୁଯାୟୀ ଓଡ଼ିଶାର ମୋଟ ଲୋକସଂଖ୍ୟା - ୩,୧୬,୫୯,୭୩୬

ଲୋକସଂଖ୍ୟାରୁ ଆଦିବାସୀଙ୍କ ସଂଖ୍ୟା - ୭୦,୩୨,୨୧୪ ଲୋକସଂଖ୍ୟାରୁ ହରିଜନଙ୍କ ସଂଖ୍ୟା - ୫୧,୨୯,୩୧୪

ଲୋକସଂଖ୍ୟାରୁ ଆଦିବାସୀଙ୍କ % ଭାଗ - ୨୨-୨୧ ଲୋକସଂଖ୍ୟାରୁ ହରିଜନଙ୍କ % ଭାଗ - ୧୬-୨୦

*ସରକାରଙ୍କ ରେକର୍ଡ ଅନୁଯାୟୀ ଓଡ଼ିଶାରେ ୬୨ଟି ଗୋଷ୍ଠୀର ଆଦିବାସୀ ବାସ କରନ୍ତି । ସେମାନଙ୍କ ତାଲିକା ଓ ଜନସଂଖ୍ୟା ନିମ୍ନରେ ଦିଆଗଲା ।*

| କ୍ରମିକ ସଂଖ୍ୟା | ଗୋଷ୍ଠୀ (Tribe) ର ନାମ | ସମୁଦାୟ ଜନସଂଖ୍ୟା | ମୁଖ୍ୟତଃ କେଉଁ ଅଞ୍ଚଳରେ ରହନ୍ତି |
|---|---|---|---|
| ୧ | ବଗତ | ୨,୬୧୬ | |
| ୨ | ବଇଗା | ୧୮୮ | |
| ୩ | ବଂଜାରା | ୧୦,୯୨୫ | କଳାହାଣ୍ଡି, କୋରାପୁଟ, ନୂଆପଡା |
| ୪ | ବାଥୁଡି | ୧୪୭, ୯୭୦ | ମୟୂରଭଞ୍ଜ, ବାଲେଶ୍ବର, କେଉଁଝର |
| ୫ | ବୋତଡ଼ା, ଧୋତଡ଼ା | ୨୪୭, ୭୦୯ | କୋରାପୁଟ, କଳାହାଣ୍ଡି |
| ୬ | ଭୂୟାଁ | ୨୦୭, ୭୯୩ | କେଉଁଝର |
| ୭ | ଭୂମିଆଁ | ୭୫, ୨୧୧ | ନବରଙ୍ଗପୁର |
| ୮ | ଭୂମିଜ | ୧୫୭, ୬୧୩ | ମୟୂରଭଞ୍ଜ, ସୁନ୍ଦରଗଡ଼, କେଉଁଝର, ବାଲେଶ୍ବର |
| ୯ | ଭୂଞ୍ଜିଆ | ୯,୦୭୭ | ବଲାଙ୍ଗୀର, ସମ୍ବଲପୁର |
| ୧୦ | ବିଂଝାଲ | ୯୮,୬୩୧ | କେଉଁଝର, ସୁନ୍ଦରଗଡ଼ |
| ୧୧ | ବିଂଝିଆ, ବିଂଝୋଆ | ୮,୦୪୧ | କଳାହାଣ୍ଡି, ସୁନ୍ଦରଗଡ଼ |
| ୧୨ | ବିରହୋର | ୧୪୨ | କେଉଁଝର, ମୟୂରଭଞ୍ଜ |
| ୧୩ | ବୋଣ୍ଡୋ ପରଜା | ୫,୮୯୫ | ମାଲକାନାଗିରି |

| କ୍ରମିକ ସଂଖ୍ୟା | ଗୋଷ୍ଠୀ (Tribe) ର ନାମ | ସମୁଦାୟ ଜନସଂଖ୍ୟା | ମୁଖ୍ୟତଃ କେଉଁ ଅଞ୍ଚଳରେ ରହନ୍ତି |
|---|---|---|---|
| ୧୪ | ଚେଂଚୁ | ୩୯ | |
| ୧୫ | ଦଳ | ୧୮,୧୬୩ | ବଲାଙ୍ଗୀର, କଳାହାଣ୍ଡି, ନୂଆପଡ଼ା |
| ୧୬ | ଦେଶୁଆ ଭୂମିଜ | ୧,୧୮୩ | |
| ୧୭ | ଧରୁଆ | ୮,୬୧୧ | |
| ୧୮ | ଦିଦାୟି | ୧,୧୯୮ | କୋରାପୁଟ |
| ୧୯ | ଗଦବା | ୫୬,୯୧୩ | କୋରାପୁଟ |
| ୨୦ | ଗଣ୍ଡିଆ | ୨,୨୬୩ | |
| ୨୧ | ଘରା | ୬୧୮ | |
| ୨୨ | ଗଣ୍ଡ, ଗୋଣ୍ଡୋ | ୬୦୨, ୭୪୯ | ସୁନ୍ଦରଗଡ଼, ସମ୍ବଲପୁର, କଳାହାଣ୍ଡି |
| ୨୩ | ହୋ | ୪୪,୪୯୬ | ମୟୂରଭଞ୍ଜ |
| ୨୪ | ହୋଲଭା | ୮,୮୮୩ | କୋରାପୁଟ, କଳାହାଣ୍ଡି |
| ୨୫ | ଜଟାପୁ | ୧୮,୪୫୬ | କୋରାପୁଟ, ଗଂଜାମ |
| ୨୬ | ଜୁଆଙ୍ଗ୍ | ୩୦,୮୭୬ | ଢେଙ୍କାନାଳ, କେଉଁଝର |
| ୨୭ | କନ୍ଧ ଗଉଡ଼ | ୧୫,୧୮୯ | |
| ୨୮ | କୱାର | ୮,୫୪୯ | |
| ୨୯ | ଖାଡ଼ିଆ, ଖାଡ଼ିଆନ | ୧୪୪, ୧୭୮ | ମୟୂରଭଞ୍ଜ |
| ୩୦ | ଖରୱାର | ୧,୪୩୪ | |
| ୩୧ | ଖୋଣ୍ଡ, ଗୋଣ୍ଡ, କନ୍ଧ, ନଙ୍ଗୁଲି କନ୍ଧ, ସିଥ କନ୍ଧ | ୯୮୯, ୩୪୨ | ବଲାଙ୍ଗୀର, କଳାହାଣ୍ଡି, ଫୁଲବାଣୀ, ସମ୍ବଲପୁର, କୋରାପୁଟ |
| ୩୨ | କିଷାନ | ୨୨୭, ୯୯୨ | ସୁନ୍ଦରଗଡ଼, ସମ୍ବଲପୁର, କଳାହାଣ୍ଡି |
| ୩୩ | କୋଲ | ୪,୨୩୫ | |
| ୩୪ | କୋହ୍ଲ ଲୋହରସ, କୋଲ୍ଲୋହରସ | ୭,୫୬୨ | |

| କ୍ରମିକ ସଂଖ୍ୟା | ଗୋଷ୍ଠୀ (Tribe) ର ନାମ | ସମୁଦାୟ ଜନସଂଖ୍ୟା | ମୁଖ୍ୟତଃ କେଉଁ ଅଞ୍ଚଳରେ ରହନ୍ତି |
|---|---|---|---|
| ୩୫ | କୋହ୍ଲ | ୩୨୬, ୫୨୩ | ମୟୂରଭଞ୍ଜ, କେଉଁଝର, ସୁନ୍ଦରଗଡ଼ |
| ୩୬ | କୋଲି, ମାଲହର | ୪,୭୧୧ | ଗଞ୍ଜାମ |
| ୩୭ | କୋଣ୍ଡଡୋରା | ୧୭,୪୪୨ | ଗଞ୍ଜାମ |
| ୩୮ | କୋର | ୫,୮୩୨ | କୋରାପୁଟ |
| ୩୯ | କୋରୁଆ | ୯୮୬ | ସମ୍ବଲପୁର, ଢେଙ୍କାନାଳ |
| ୪୦ | କୋଟିଆ | ୧୯,୧୩୬ | କୋରାପୁଟ, ଫୁଲବାଣୀ, କଳାହାଣ୍ଡି |
| ୪୧ | କୋୟା | ୮୭,୨୭୦ | କୋରାପୁଟ |
| ୪୨ | କୁଲିସ | ୧,୪୯୮ | ସମ୍ବଲପୁର, ବଲାଙ୍ଗୀର |
| ୪୩ | ଲୋଧା | ୫,୧୦୦ | ମୟୂରଭଞ୍ଜ |
| ୪୪ | ମଦିଆ | ୧,୦୬୬ | |
| ୪୫ | ମାହାଲି | ୧୧,୭୬୭ | ମୟୂରଭଞ୍ଜ, ସୁନ୍ଦରଗଡ଼ |
| ୪୬ | ମାଙ୍କିଡ଼ି | ୨୦୫ | |
| ୪୭ | ମାଙ୍କିରଡ଼ିଆ | ୧,୦୦୫ | |
| ୪୮ | ମାତ୍ୟ | ୧୨,୧୨୩ | |
| ୪୯ | ମିରଧାସ୍ | ୨୮,୧୭୭ | ବଲାଙ୍ଗୀର, ସମ୍ବଲପୁର |
| ୫୦ | ମୁଣ୍ଡା, ମୁଣ୍ଡା ଲୋହରା, ମୁଣ୍ଡା ମହଲିସ | ୩୩୮, ୯୩୫ | ମୟୂରଭଞ୍ଜ, ସୁନ୍ଦରଗଡ଼ |
| ୫୧ | ମୁଣ୍ଡାରି | ୨୪,୬୬୭ | |
| ୫୨ | ଓମାନତ୍ୟ | ୧୮,୪୬୫ | କୋରାପୁଟ |
| ୫୩ | ଓରାଂ | ୨୧୫, ୩୩୭ | ସୁନ୍ଦରଗଡ଼, ସମ୍ବଲପୁର |
| ୫୪ | ପାରେଙ୍ଗା | ୯,୬୨୨ | କୋରାପୁଟ |
| ୫୫ | ପରଜା | ୨୬୭, ୧୮୪ | କୋରାପୁଟ |
| ୫୬ | ପେଣ୍ଟିଆ | ୭,୯୦୮ | କୋରାପୁଟ, ମୟୂରଭଞ୍ଜ, କେଉଁଝର |

| କ୍ରମିକ ସଂଖ୍ୟା | ଗୋଷ୍ଠୀ (Tribe) ର ନାମ | ସମୁଦାୟ ଜନସଂଖ୍ୟା | ମୁଖ୍ୟତଃ କେଉଁ ଅଞ୍ଚଳରେ ରହନ୍ତି |
|---|---|---|---|
| ୫୭ | ରଜୁଆର | ୨,୩୧୩ | |
| ୫୮ | ସାନ୍ତାଳ | ୫୩୦, ୭୭୬ | ମୟୁରଭଞ୍ଜ, ବାଲେଶ୍ୱର, କେଉଁଝର |
| ୫୯ | ସଉରା, ସବର, ସଉରା, ସହରା | ୩୭୦, ୦୬୦ | ଗଞ୍ଜାମ, କୋରାପୁଟ, ନୂଆପଡ଼ା |
| ୬୦ | ଶବର, ଲୋଧା | ୩୨୯, ୨୦୯ | ଗଞ୍ଜାମ, କୋରାପୁଟ, ମୟୁରଭଞ୍ଜ |
| ୬୧ | ସାଉଣ୍ଟି | ୬୭,୮୭୨ | |
| ୬୨ | ଥରୁଆ | ୧,୦୩୪ | |
| | ଅନ୍ୟାନ୍ୟ | ୪୨,୩୩୨ | |
| | ଓଡ଼ିଶା ମୋଟ | ୫୯,୧୫,୦୬୭ | |

ସୌଜନ୍ୟ - ଶାନ୍ତିଲି ବିଚାର

## ମାଡା (Modified Area Development Approach Pockets) ଯୋଜନା ଅନ୍ତର୍ଭୁକ୍ତ ଆଦିବାସୀ ବହୁଳ ଅଞ୍ଚଳ

| କ୍ରମିକ ସଂଖ୍ୟା | ଜିଲ୍ଲା | କ୍ରମିକ ସଂଖ୍ୟା | ଅଞ୍ଚଳ କିମ୍ବା ବ୍ଲକ୍‌ର ନାମ | ଗ୍ରାମ ସଂଖ୍ୟା |
|---|---|---|---|---|
| ୧ | କଟକ | ୧ | ସୁକିନ୍ଦା-୧ | ୩୩ |
| | | ୨ | ସୁକିନ୍ଦା-୨ | ୧୨ |
| | | ୩ | ଡ଼ଙ୍ଗଡି | ୨୩ |
| ୨ | ପୁରୀ | ୪ | ବାଣପୁର-ରଣପୁର | ୮୨ |
| | | ୫ | ନୂଆ ଗାଁ | ୧୦୭ |
| | | ୬ | ଗଣିଆ, ଦଶପଲ୍ଲା | ୧୯୬ |
| ୩ | ବାଲେଶ୍ୱର | ୭ | ଜଳେଶ୍ୱର | ୩୧ |
| ୪ | କେଉଁଝର | ୮ | ଆନନ୍ଦପୁର-୧ | ୫୫ |
| | | ୯ | ଆନନ୍ଦପୁର-୨ | ୨୯ |
| | | ୧୦ | ହାଟ ଡିହି | ୨୪ |
| | | ୧୧ | ଘସିପୁର | ୩୩ |
| ୫ | ଢେଙ୍କାନାଳ | ୧୨ | ପାଲଲହଡା | ୧୪୫ |
| | | ୧୩ | କଙ୍କଡ଼ା ହାଡ଼ | ୫୨ |
| | | ୧୪ | ଆଠମଲ୍ଲିକ | ୫୬ |
| ୬ | ଗଞ୍ଜାମ | ୧୫ | ତୁରୁବୁଡ଼ି | ୧୭୯ |
| | | ୧୬ | କାଶିନଗର | ୪୮ |
| ୭ | ଫୁଲବାଣୀ | ୧୭ | ବଉଦ | ୧୦୦ |
| ୮ | ବଲାଙ୍ଗିର | ୧୮ | ଖପ୍ରାଖୋଲ | ୫୬ |
| | | ୧୯ | ତୁରେକେଲା | ୨୨ |
| | | ୨୦ | ଟେନ୍ତୁଳିଖୁଣ୍ଟି | ୩୮ |

| କ୍ରମିକ ସଂଖ୍ୟା | ଜିଲ୍ଲା | କ୍ରମିକ ସଂଖ୍ୟା | ଅଞ୍ଚଳ କିମ୍ବା ବ୍ଲକ୍‌ର ନାମ | ଗ୍ରାମ ସଂଖ୍ୟା |
|---|---|---|---|---|
| | | ୨୧ | ଦେଓଗଡ଼-ପାଟନାଗଡ଼ | ୩୧ |
| | | ୨୨ | ସର୍ଣ୍ଣିତଲା - ମୁରିବାହାଲ | ୪୭ |
| ୯ | ସମ୍ବଲପୁର | ୨୩ | ଧାନକୋଣ୍ଡା | ୨୪ |
| | | ୨୪ | କଲାବିରା-ରେଙ୍ଗାଲି | ୪୧ |
| | | ୨୫ | ଝାରସୁଗୁଡ଼ା - ଲଖନପୁର | ୩୭ |
| | | ୨୬ | ଲାଇକେରା -କିରିମିରା | ୪୫ |
| | | ୨୭ | ପାଇକମାଲ | ୩୦ |
| | | ୨୮ | ପାଇକମଲ - ଝାରବନ୍ଧ | ୪୫ |
| | | ୨୯ | ବରକୋଟ | ୪୪ |
| | | ୩୦ | ତିଲେଇବନି | ୧୩୮ |
| | | ୩୧ | କୁଚୁମୋରା | ୯୨ |
| | | ୩୨ | ଲଖନପୁର | ୧୯ |
| ୧୦ | କଳାହାଣ୍ଡି | ୩୩ | ଭବାନୀପାଟଣା | ୯୪ |
| | | ୩୪ | କୋମନା | ୭୩ |
| | | ୩୫ | ବୋଡ଼େନ୍ | ୫୦ |
| | | ୩୬ | ନୂଆପଡ଼ା - ୧ | ୩୬ |
| | | ୩୭ | ନୂଆପଡ଼ା - ୨ | ୪୧ |
| | | ୩୮ | କେସିଙ୍ଗା | ୧୭ |
| | | ୩୯ | ଜୁନାଗଡ଼ | ୪୧ |
| | | ୪୦ | ମଦନପୁର-ରାମପୁର | ୧୫୭ |
| | | ୪୧ | ଖରିଆର-୧ | ୧୬ |
| | | ୪୨ | ଖରିଆର-୨ | ୩୩ |
| | | ୪୩ | ଜୟପାଟଣା | ୨୪ |
| | | ୪୪ | ସିନାପାଲି | ୪୪ |
| | | ୪୫ | ନରଲା | ୨୩ |
| | | | ମୋଟ | ୨୫୬୩ |

